# ଜହ୍ନମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାର ଜାତକ କଥା 'ସୁବର୍ଣ୍ଣ ମୟୂର' ଗୋଟିଏ ଅତି ସୁନ୍ଦର କାହାଣୀ । ମଣିଷ କୌଣସି ସ୍ଥୂଳ ଉପାୟ ଅବଲମ୍ବନ କରି ଅମର ହୋଇ ପାରିବ ନାହିଁ । ନିଜ ଚେତନାର ପରିବର୍ତ୍ତନ ହୋଇ ତାହା ଦିବ୍ୟ ଚେତନାରେ ପରିଣତ ହେଲେ ଯାଇ ଜଣେ ଅମରତ୍ୱ ଲାଭ କରିପାରେ ।

## ଅମରବାଣୀ

ପୁସ୍ତକେଷୁ ତୁ ଯା ବିଦ୍ୟା ପରହସ୍ତେଷୁ ଯଦ୍ଧନଂ ।
ସଂଗ୍ରାମେ ତୁ ଗୃହେ ସୈନ୍ୟଂ ତ୍ରୟଃ ପୁଂସାଂ ବିଡମ୍ବନା ।

[ ପୋଥିରେ ଥିବା ବିଦ୍ୟା, ପର ହସ୍ତରେ ଥିବା ଧନ ଏବଂ ଯୁଦ୍ଧ ବେଳେ ଘରେ ବସିଥିବା ସୈନିକ—ଏ ତିନି ଥାଇ ମଧ୍ୟ ନଥିବା ଭଳି—ବିଡମ୍ବନା ମାତ୍ର ! ]

ବର୍ଷ : ୧୯ ସେପ୍ଟେମ୍ବର ୧୯୮୫ ଅଙ୍କ : ୩

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



# ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



## ପ୍ରାଚୀନ ମୁଦ୍ରା

ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ଭାରତରେ ପ୍ରଥମେ ମୁଦ୍ରାର ପ୍ରଚଳନ ହୋଇଥିଲା । ଆଲିଗଡ଼ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଇର୍ଫାନ୍ ହାବିବ୍‌ଙ୍କ ମତାନୁସାରେ ସେସବୁ ରୌପ୍ୟ ମୁଦ୍ରା ।

## ନୂତନ ମାନଦଣ୍ଡ

ଉତ୍କୃଷ୍ଟ ଚଳଚ୍ଚିତ୍ର ବାଛିବା ପାଇଁ କେତେ ଦେଶରେ କେତେ ସମିତିମାନ ଅଛନ୍ତି । କିନ୍ତୁ ନିଉ ଜେରେସିରେ ଅଛି ଗୋଟିଏ ସମିତି—ଯାହାର କାମ ହେଲା ସବୁଠାରୁ ବିରକ୍ତିକର ଚଳଚ୍ଚିତ୍ର ବାଛିବା ! "ଆମ ସଦସ୍ୟମାନଙ୍କୁ ଘଣ୍ଟା ଘଣ୍ଟା ଧରି ଢୁଙ୍ଗୁଡ଼ି ମାରିବାକୁ ପଡ଼ୁଥାଏ—ସେଭଳି ଚିତ୍ର ବାଛିବା ପାଇଁ !" ସମିତିର ନିର୍ଦ୍ଦେଶକ କହନ୍ତି !





## ଫୋଟୋ ନ ଉଠାଇ 'ଏକ୍ସରେ'

ଫଟୋ ନ ଉଠାଇ ଏକ୍ସରେ ଜରିଆରେ ରୋଗ ନିରୂପଣ କରିପାରିବାର ଟିଭି-ସଦୃଶ ଯନ୍ତ୍ର ଜାପାନରେ ଆବିଷ୍କୃତ ହୋଇଛି ।

# ଜାଣନ୍ତି କି ?

୧. ହର୍ଷବର୍ଦ୍ଧନଙ୍କ ରାଜୁତି ବେଳେ କେଉଁ ଚୀନ୍ ପରିବ୍ରାଜକ ଭାରତ ଆସିଥିଲେ ?
୨. ଦ୍ୱିତୀୟ ପୁଲକେଶୀ କେଉଁ ବଂଶ ସମ୍ଭୂତ ?
୩. କୁତବ୍‌ମିନାର୍ ଭଳି ଉଚ୍ଚ ମିନାର ନିର୍ମାଣ କରିବାକୁ ଚେଷ୍ଟା କରି ନିର୍ମାଣ ଶେଷ କରିପାରିବା ପୂର୍ବରୁ ମୃତ୍ୟୁ ବରଣ କରିଥିବା ସୁଲତାନ୍ କିଏ ?
୪. ରାଜଗାଦିରେ ବସିବା ବେଳକୁ ଆକବରଙ୍କ ବୟସ କେତେ ହୋଇଥିଲା ?
୫. ଛତ୍ରପତି ଶିବାଜୀଙ୍କ ପିତାଙ୍କ ନାମ କ'ଣ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ଯମରାଜାଙ୍କ ଭୁଲ?

ଥରେ ନାରଦ ଆକାଶ ମାର୍ଗରେ ଯାଉଥିବା ଅବସ୍ଥାରେ ଦେଖିଲେ ଦୁଇଜଣ ଦେବଦୂତ ଜଣେ ଲୋକକୁ ସ୍ୱର୍ଗପୁରୀ ଆଡ଼େ ନେଇ-ଯାଉଛନ୍ତି । ଲୋକଟିକୁ ନାରଦ ଜାଣିଥିଲେ । ତା' ନାମ ବୀରବର । ସେ ସମସ୍ତଙ୍କ ପ୍ରତି ବଡ଼ କର୍କଶ ବ୍ୟବହାର କରୁଥିଲା । ସେତିକି ନୁହେଁ, ତା'ର ବିଶେଷ ଅଭାବ ନଥିଲେ ମଧ୍ୟ ସେ କାହା ପ୍ରତି କେବେ ଦୟା ବା ଦାନ କରିବାର ଜଣା ନଥିଲା ।

ନାରଦ ମଧ୍ୟେ ମଧ୍ୟେ ପୃଥିବୀ ଭ୍ରମଣରେ ଆସୁଥିବା ବେଳେ ଲୋକଟିର ଆଚାର ବ୍ୟବହାର ଓ କଥାବାର୍ତ୍ତା ଲକ୍ଷ୍ୟ କରୁଥିଲେ । ଲୋକଟି ବର୍ତ୍ତମାନ ସ୍ୱର୍ଗପୁରୀ ଅଭିମୁଖେ ଯାଉଥିବାର ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ ।

“କହୋ ! ତମେ କ'ଣ ସ୍ୱର୍ଗପୁରୀ ଆଡ଼େ ଚାଲିଛ ?” ନାରଦ ପଚାରିଲେ ।

“ନମସ୍କାର ନାରଦ ଦେବ ! ମୁଁ ଏ ଦେବଦୂତମାନଙ୍କ କାମରେ ନିଜେ କ'ଣ କମ୍ ଆଶ୍ଚର୍ଯ୍ୟ ? ଏମାନଙ୍କୁ ମୁଁ ଦଶଥର କହି ସାରିଲିଣି କି ଏମାନଙ୍କର କିଛି ଭୁଲ୍ ହୋଇଥିବ । କାରଣ ମୁଁ ଗୋଟାଏ ଅଧମ ମଣିଷ । ମୁଁ ଏମିତି କିଛି କାମ କରି ନାହିଁ, ଯାହା ଫଳରେ ସ୍ୱର୍ଗକୁ ଯିବି !” ବୀରବର କହିଲା ।

ନାରଦ ଦେବଦୂତ ଦୁହିଁଙ୍କ ଆଡ଼େ ଅନାଇବାରୁ ସେମାନେ କହିଲେ, “ମୁନିବର ! ଆମେ କ'ଣ ଜାଣୁ ? ଆମକୁ ଯମରାଜ ଯାହା କହିଛନ୍ତି, ଆମେ ତାହାହିଁ କରୁଛୁଁ ।”

ଯମରାଜ ଏଡ଼େ ବଡ଼ ଭୁଲ କିପରି କଲେ, ସେକଥା ଭାବି ନାରଦ ବଡ଼ ଆଶ୍ଚର୍ଯ୍ୟ ହେଲେ । ସେ ସେଇଠୁ ସିଧା ଯମରାଜଙ୍କ ନିଳୟ ଆଡ଼େ ଚାଲିଲେ । ଯମରାଜ ତାଙ୍କୁ ସ୍ୱାଗତ କରନ୍ତେ

ଶ୍ୟାମସୁନ୍ଦର୍



ସେ ପଚାରିଲେ, "ଆଚ୍ଛା, ବର୍ତ୍ତମାନ ମୁଁ ବୀରବର ନାମକ ଜଣେ ବ୍ୟକ୍ତିର ମୃତ୍ୟୁ ପରେ ଦେବଦୂତମାନେ ତା' ପ୍ରାଣପୁରୁଷକୁ ସ୍ୱର୍ଗ-ଲୋକଆଡ଼େ ନେଇ ଯାଉଥିବାର ଦେଖିଲି । ମୁଁ ସେ ଲୋକକୁ ଜାଣିଥିଲି । ସ୍ୱର୍ଗ ତ ଦୂରର କଥା, ସେ ନର୍କକୁ ଯିବା କଥା । ଆପଣଙ୍କ ବିଚାରରେ କିଛି ଭୁଲ୍ ହୋଇ ନାହିଁ ତ ?"

ଯମରାଜ ହସିଲେ ଓ କହିଲେ; "ଅସମ୍ଭବ କ'ଣ !"

"ତା'ହେଲେ ?" ଆଶ୍ଚର୍ଯ୍ୟ ହୋଇ ନାରଦ ପଚାରିଲେ ।

"ତା'ହେଲେ ଲୋକଟିକୁ ପୁଣି ପରୀକ୍ଷା କରିବା ।" ଯମରାଜ କହିଲେ ।

ଏହାପରେ ବୀରବର ହଠାତ୍ ସ୍ୱପ୍ନରୁ ଉଠିଲା ଭଳି ନିଜ ଘର ଭିତରେ ଶେଯରୁ ଉଠି ବସିଲା । ସେତେବେଳକୁ ତା' ପରିବାରର ଲୋକେ କାନ୍ଦବୋବାଳି ଛାଡ଼ିଥିଲେ । ସେମାନଙ୍କ ମୁହଁରେ ହସ ଫୁଟିଲା ।

ବୀରବର ସମ୍ପୂର୍ଣ୍ଣ ସୁସ୍ଥ ହୋଇ ଘର କାମଦାମରେ ମନ ଦେଲା । କ୍ରମେ ତା'ର ଉନ୍ନତି ହେବାକୁ ଲାଗିଲା । ଦିନେ ସେ ପିଣ୍ଡାରେ ବସିଛି, ଜଣେ ଗରିବ ଲୋକ ଆସି ତାକୁ କିଛି ଭିକ୍ଷା ମାଗିଲା । ସେ କିନ୍ତୁ ତାକୁ ସୋର୍କଠୋକ୍ କହିଦେଲା, "ମୁଁ କାହାକୁ ଭିକ୍ଷା ଦିଏଁ ନାହିଁ । ତମେ କାମ ଚାହିଁଲେ ମୁଁ ଦେଇପାରେଁ ।"

ନାରଦ ଓ ଯମରାଜ ତା' ବ୍ୟବହାର ଲକ୍ଷ୍ୟ କରୁଥିଲେ । ନାରଦ ଅଳ୍ପ ହସି ଯମରାଜଙ୍କ ଆଡ଼େ ଅନାଇଲେ । ଅର୍ଥାତ୍ ବୀରବର କେଡ଼େ ନିଷ୍ଠୁର ତାହା ସେ ସୂଚାଇ ଦେବାକୁ ଚାହୁଁଥିଲେ ।

ସେତିକିବେଳେ ଭିକାରି ଆଡ଼େ ଅନାଇ ବୀରବର ପଚାରିଲା, "କ'ଣ, ଆଉ କିଛି କହିବ ? ମୁଁ ଯାହା କହିବାର କହି ଦେଇଛି ।"

"ମୁଁ ଆଜ୍ଞା କି କାମ କରିବ ? ମୋ ଦେହରେ ବଳ କାହିଁ ?" ଭିକାରି କହିଲା ।

"ବଳ ନଥିଲେ ପ୍ରଥମେ ଖିଆପିଆ କରି ବଳ ସଞ୍ଚୟ କର ।" ବୀରବର କହିଲା ।



ଖିଆପିଆ କରିବା ଭଳି ପୁଞ୍ଜି ମୋଠିଁ ନାହିଁ ।" ଭିଖାରି କହିଲା ।

"ବେଶ୍ । ଏଇଠି ରୁହ ।" ଏହା କହି ବୀରବର ସେ ଲୋକର ଖିଆପିଆ ସକାଶେ ବନ୍ଦୋବସ୍ତ କରିଦେଲା । ଦୁଇ ତିନିଦିନ ଉତ୍ତାରୁ ଲୋକଟି ବଳ ପାଇବାରୁ ତାକୁ କାମ କରିବାକୁ ଦେଲା ।

ବୀରବର କ୍ରମେ ବହୁତ ପଇସା ପତ୍ର ଉପାର୍ଜନ କରିବାର ନାରଦ ଓ ଯମରାଜ ଲକ୍ଷ୍ୟ କଲେ । ସେ ମୁଲକରେ ସେ ସବୁଠାରୁ ବଡ଼ ଧନୀ ହେଲା । କିନ୍ତୁ ଦିନେ ଗାଁ ଲୋକେ ଆସି ତାକୁ ଗୋଟିଏ ମନ୍ଦିର ଗଢ଼ ଦେବା ସକାଶେ କହିବାରୁ ସେ ରୋକ୍‌ଠୋକ୍ ମନା କରିଦେଲା । ନାରଦ ଯମରାଜଙ୍କୁ କହିଲେ, "ଦେଖିଲେ ? ଲୋକଟାର ମନରେ ଧର୍ମଭାବ ନାହିଁ ।"

ଯମରାଜ ହସିଲେ ଓ କହିଲେ, "ଅପେକ୍ଷା କରନ୍ତୁ । ଯଦି ଲୋକଟି ଅଧର୍ମୀ ହୋଇଥିବ, ତେବେ ତାକୁ ନର୍କକୁ ପଠାଇବା ।

ପରଦିନ ଦେଖାଗଲା ବୀରବର ପଡ଼ିଆ ଭିତରେ ଗୋଟିଏ କୋଦାଳ ଧରି ମାଟି ତାଡୁଛି । ଗାଁ ଲୋକେ ଆଶ୍ଚର୍ଯ୍ୟ ହୋଇଗଲେ । ସେମାନଙ୍କ ଭିତରୁ କେତେଜଣ ତାକୁ ମାଟି ଖୋଳିବାର କାରଣ କ'ଣ ବୋଲି ପଚାରିବାରୁ ସେ କହିଲା, "ମୁଁ ସ୍ୱପ୍ନରେ ଦେଖିଲି, ଏଠି ସ୍ଥାନେ ସ୍ଥାନେ ଟଙ୍କାକଉଡ଼ି ପୋତା ହୋଇଛି ।"

ଏହା କହୁଁ କହୁଁ ସେ ଗୋଟିଏ ଛୋଟ ଟଙ୍କା ଥଳି ମାଟି ତଳୁ ବାହାର କରିବାର ସମସ୍ତେ ଦେଖିଲେ । ଘଣ୍ଟାଏ ଭିତରେ ଗାଁର ସବୁ ଦକ୍ଷ ଲୋକେ ଆସି ସେଠାରେ ମାଟି ଖୋଳିବାରେ ଲାଗିଗଲେ । ଅନେକେ ଛୋଟ ଛୋଟ ଟଙ୍କା ଥଳିମାନ ପାଇବାର ଦେଖାଗଲା । କ୍ରମେ ବୀରବରର ନେତୃତ୍ୱରେ ସେଠାରେ ଗୋଟିଏ ବିରାଟ ପୁଷ୍କରିଣୀ ଖୋଳା ହୋଇଗଲା । ଯଥେଷ୍ଟ ପାଣି ଅଭାବରୁ ବହୁ ବର୍ଷ ଧରି ଲୋକେ କଷ୍ଟ ପାଉଥିଲେ । ବର୍ତ୍ତମାନ ସେ କଷ୍ଟ ଦୂର ହେଲା ।

ବୀରବର ଗାଁ ଲୋକଙ୍କୁ କହିଲା, "ମୁଁ ସ୍ୱପ୍ନରେ ଦେଖିଲି ଦେବୀ କହୁଛନ୍ତି କି ସେସବୁ

ଟଙ୍କା ତାଙ୍କର । ଯେଉଁମାନେ ପାଇଛନ୍ତି, ସେମାନେ ସମସ୍ତେ ମିଶି ତାଙ୍କ ପାଇଁ ମନ୍ଦିର ଗଢ଼ି ଦେବା ଉଚିତ ।”

ଯେଉଁମାନେ ଟଙ୍କାଥଳିମାନ ପାଇଥିଲେ, ସେମାନେ ସେ ଟଙ୍କାରୁ ଅଧା ଲେଖାଏଁ ଦେଲେ । ମନ୍ଦିର ନିର୍ମାଣ ହୋଇଗଲା । ବୀରବର ମନ୍ଦିରର ରକ୍ଷଣାବେକ୍ଷଣା ପାଇଁ ନିଜର ସବୁ ସମ୍ପତ୍ତି ମନ୍ଦିର ପାଇଁ ଦାନ କରିଦେଲା । ଶେଷ ଜୀବନରେ ମନ୍ଦିରର ଫାଟକ ପାଖରେ ବସିରହି ସେ ସମୟ କଟାଉ ଥାଏ ।

ନାରଦ ବୁଝିଲେ, ପଡିଆରେ ବୀରବର ନିଜେ ଟଙ୍କାପଇସା ଭିନ୍ନ ଭିନ୍ନ ସ୍ଥାନରେ ପୋତି ରଖିଥିଲା । ନାରଦ ଏହାବି ବୁଝିଲେ ଯେ ସେ ଏକା ମନ୍ଦିର ନିର୍ମାଣ କରିଦେଇ ଯଶ ନେବାକୁ ଚାହୁଁ ନଥିଲା । ଭଗବାନ ସମସ୍ତଙ୍କ ପାଇଁ । ସମସ୍ତେ ଅର୍ଥଦାନ କରି ତାହା ନିର୍ମାଣ କଲେ ସମସ୍ତଙ୍କର ଦିଅଁଙ୍କ ପ୍ରତି ଆକର୍ଷଣ ମଧ୍ୟ ରହିବ । ସେ ଗ୍ରାମରେ ବଡ଼ ପୁଷ୍କରିଣୀଟିଏ ତିଆରି କରିନେବା ସଙ୍ଗେ ସଙ୍ଗେ ମନ୍ଦିର ମଧ୍ୟ ଗଢ଼ାଇ ନେଲା ।

“ମୁନିବର ! କାହା ବ୍ୟବହାର ଉପରକୁ କପଟ ଦେଖାଯାଏ, ସେଥିରୁ କାହାରି ଚରିତ୍ର ନିର୍ଣ୍ଣୟ କରିବା ଠିକ୍ ନୁହେଁ । ଜଣେ ହୃଦୟରେ ଅମାପ ଦୟା ପୋଷଣ କରି ମଧ୍ୟ ଉପରକୁ ରୁକ୍ଷ ଦେଖାଯାଇପାରେ । ଜଣେ ଉପରେ ଖୁବ୍ ଦୟାବାନ ଦେଖାଇ ଭିତରେ ସ୍ୱାର୍ଥପର ହୋଇପାରେ ।” ଯମରାଜ ନାରଦଙ୍କୁ କହିଲେ ।

ନାରଦ ନମ୍ର ଭାବରେ କହିଲେ, “ହେ ଯମରାଜ ! ଆପଣଙ୍କ ଅନ୍ୟ ନାମ ଧର୍ମରାଜ, ଆପଣଙ୍କ ବିଚାର କଦାପି ଭୁଲ୍ ହୋଇ ନପାରେ । ତଥାପି ମୋର କୌତୁହଳ ହେବାରୁ ଆପଣଙ୍କୁ କହିଥିଲି । ଆପଣ ମୋତେ ଜିନିଷଟି ଭଲ ଭାବରେ ବୁଝାଇଦେଲେ । ମୁଁ କୃତଜ୍ଞ ।”






[୯]

[ କାପାଳିକଠାରୁଁ ବିଦାୟ ନେଇ ଚନ୍ଦ୍ରବର୍ମା ଉତ୍ତର ଦିଗକୁ ଯାତ୍ରା କଲେ । କାଳ ନାଗର ନିର୍ଦ୍ଦେଶରେ ବଣ ଭିତରେ ସେ ଗୋଟାଏ ବିଚିତ୍ର ବୃକ୍ଷର ଫଳ ଛିଡ଼ାଇ ଖାଇବା ମାତ୍ରେ ସେ ପଶୁ ପକ୍ଷୀଙ୍କ ଭାଷା ବୁଝିବା ଶକ୍ତି ପାଇଗଲେ । କାଳ ନାଗ ତାଙ୍କୁ ଗୋଟାଏ ଉଷ୍ଣ ପ୍ରବାହ ପର୍ଯ୍ୟନ୍ତ ନେଇଗଲା । ଚନ୍ଦ୍ରବର୍ମା ସେ ପ୍ରବାହ ପାରି ହେବାର ଉପାୟ ଚିନ୍ତା କରୁଛନ୍ତି ସେତିକି ବେଳେ ଗୋଟାଏ ବିଶାଳ ସର୍ପ ପ୍ରବାହର ଏକ ଦିଗରୁ ଅନ୍ୟ ଦିଗ ପର୍ଯ୍ୟନ୍ତ ନିଜକୁ ସେତୁ ଭଳି ବିସ୍ତୃତ କଲା । ଚନ୍ଦ୍ରବର୍ମା ତାହାର ଉପର ଦେଇ ଚାଲିଲେ । ତା'ପରେ...]

ଚନ୍ଦ୍ରବର୍ମା ସାପ ପିଠି ଉପର ଦେଇ ଦୌଡ଼ିବାକୁ ଲାଗିଲେ । ପ୍ରବାହର ଅନ୍ୟ ପାଖରେ ପହଞ୍ଚିବାକୁ କିଛି ବାକିଥାଏ, ପ୍ରବାହ ଭିତରୁ ଉପରକୁ ଆସୁଥିବା ଗରମ ବାଷ୍ପରେ ତାଙ୍କ ଦେହ ସିଝିଗଲା ଭଳି ସେ ଅନୁଭବ କଲେ । କାଳେ ସେ ପ୍ରବାହ ଭିତରକୁ ଖସି ପଡ଼ିବେ, ସେହି ଆତଙ୍କରେ ଆତଙ୍କିତ ହୋଇ ସେ ପ୍ରବାହ ପ୍ରତି ଦୃଷ୍ଟି ନଦେଇ ତାଙ୍କ ଆଗେ ଆଗେ ଚାଲିଥିବା ମାଙ୍କଡ଼ମାନଙ୍କ ଉପରେ ଦୃଷ୍ଟି ନିବଦ୍ଧ ରଖି ଦୌଡୁଥାନ୍ତି । ଏଣେ ତଳକୁ ନ ଅନାଇଲେ ଗୋଡ଼ ଖସିଯିବାର ଆଶଙ୍କା ଥାଏ ।



ତଳକୁ ଅନାଇ ଦେବା ମାତ୍ରେ ଦେହ ଭୟରେ ଶିତେଇ ଉଠୁଥାଏ। ସାପ ଦେହ ପୁଣି ମସୃଣ। ଅତି ସାବଧାନରେ ପାଦ ନ ଥାପିଲେ ସର୍ବନାଶ! ସେ କେତୋଟି ମୁହୂର୍ତ୍ତ ଚନ୍ଦ୍ରବର୍ମାଙ୍କୁ କେତେ ଯୁଗ ଭଳି ଲାଗୁଥାଏ।

ଯାହାହେଉ, କୌଣସି ମତେ ସେ ପ୍ରବାହର ବିପରୀତ ଦିଗକୁ ଆସିଲେ ଏବଂ ସାପ ଉପରୁ ମାଟିକୁ ଡେଇଁ ପଡ଼ି ସବୁଜ ବୃକ୍ଷଲତା ଆଡ଼େ ଧାଇଁଗଲେ।

ସେ କ୍ଳାନ୍ତ ଭାବରେ ଗୋଟାଏ ବୃକ୍ଷ ମୂଳରେ ବସି ପଡ଼ି ଯେତେବେଳେ ସେ ପ୍ରବାହ ଆଡ଼େ ଅନାଇଲେ ଏବଂ କିପରି ବିପଜ୍ଜନକ ପରିସ୍ଥିତି ଭିତରୁ ସେ ଉତ୍ତୀର୍ଣ୍ଣ ଆସିଛନ୍ତି ସେକଥା ମନେ ପକାଇଲେ, ତାଙ୍କ ଦେହ ଶିତେଇ ଉଠିଲା।

ସେଯାଏ ସାପ ତା' ପୂରା ଦେହ ଟାଣି ଟାଣି ପ୍ରବାହ ପାର ହୋଇ ନଥାଏ। ତା' ପିଠି ଉପର ଦେଇ ଯେ ମାଙ୍କଡ଼ମାନେ ଏବଂ ଚନ୍ଦ୍ରବର୍ମା ଦୌଡ଼ ଦୌଡ଼ ଆସିଲେ, ଏ ବିଷୟରେ ସାପଟି କିଛି ବୁଝିପାରି ନଥିଲା ବୋଲି ମନେ ହେଲା। ଚନ୍ଦ୍ରବର୍ମା ଦେଖିଲେ, ସାପର ମୁଣ୍ଡର ବ୍ୟାସ ଦଶବାର ଫୁଟ ହେବ। ସାପର ଆଖି ଦୁଇଟା ଜଳୁଥାଏ। ତାଙ୍କ ଉପରେ ତା' ଆଖି ପଡ଼ିଲେ କଥା ସରିଲା ବୋଲି ଚନ୍ଦ୍ରବର୍ମା ବୁଝୁଥିଲେ। ତେବେ ଭାଗ୍ୟକୁ ସାପ ତାଙ୍କୁ ନ ଦେଖି ଅଗ୍ରସର ହେଲା।

ଚନ୍ଦ୍ରବର୍ମା ତଟସ୍ଥ ହୋଇ ଗୃହିଁ ରହିଥାନ୍ତି। ସାପ ଶୁଖିଲା ପତ୍ର ଓ ବୁଦାମାଳ ଭିତର ଦେଇ ସର୍ ସର୍ ଅଗ୍ରସର ହେଉଥାଏ।

ସାପର ମୁଣ୍ଡ ବହୁତ ଆଗକୁ ଚାଲିଯିବା ପରେ ଚନ୍ଦ୍ରବର୍ମା ସାପ ପାଖକୁ ଆସି ତା' ଦେହକୁ ଲକ୍ଷ୍ୟ କଲେ। ସେ ଦେହ ଚକ୍ ଚକ୍ କରୁଥାଏ, କିନ୍ତୁ ମସୃଣ ପଥର ଭଳି ମନେ ହେଉଥାଏ। ସାହସ ସଞ୍ଚୟ କରି ଚନ୍ଦ୍ରବର୍ମା ସାପ ଦେହ ତରବାରି ଦ୍ୱାରା ଫୋଡ଼ିବାକୁ ଚେଷ୍ଟା କଲେ। କିନ୍ତୁ ସାପ ସେକଥା ବୁଝି-ପାରିଲା ନାହିଁ କି ତା' ଦେହରେ ସାମାନ୍ୟ ଦାଗ ସୁଦ୍ଧା ପଡ଼ିଲା ନାହିଁ।




ଚନ୍ଦ୍ରବର୍ମା ସେତେବେଳକୁ କ୍ଷୁଧା ଅନୁଭବ କଲେଣି । ସେ ଦେଖିଲେ ପାଖରେ ଗୋଟିଏ ଆମ୍ବଗଛ ଅଛି । ତରବାରୀ କୋଷରେ ରଖି ସେ ଗଛ ଉପରକୁ ଉଠିଗଲେ ଓ ଗୋଟିଏ ପାଚିଲା ଆମ୍ବ ତୋଳିଲେ । କିନ୍ତୁ ସେ ସେଥିରେ ଦାନ୍ତ ଲଗାଇଛନ୍ତି, ହଠାତ୍ ଗୋଟିଏ ତୀକ୍ଷ୍ଣ ଆର୍ତ୍ତନାଦ ଶୁଭିଲା । ସେ ବୁଝିପାରିଲେ ଯେ ତାହା ହାତୀର ରଡ଼ି ।

ରଡ଼ି ଆସୁଥିବା ଦିଗକୁ ଚନ୍ଦ୍ରବର୍ମା ଆଖି ପକାଇଲେ । ହାତୀ କାହିଁ କେଉଁଠି ତାଙ୍କ ଆଖିରେ ପଡ଼ିଲା ନାହିଁ । କିନ୍ତୁ ଅଦୂରରେ ଗୋଟିଏ ଗଛ ପ୍ରବଳ ଭାବରେ ଦୋହଲୁଥିବାର ସେ ଦେଖିଲେ ପରେ ପରେ ଏକା ସମୟରେ ପଲେ ହାତୀଙ୍କ ରଡ଼ି ଶୁଭିଲା । ଚନ୍ଦ୍ରବର୍ମା ଗଛର ଆହୁରି ଉପର ଡାଳକୁ ଉଠିଯାଇ ଅନାଇଲେ । ଯାହା ଦେଖିଲେ, ସେଥିରେ ଅତ୍ୟନ୍ତ ସାହସୀ ଲୋକର ରକ୍ତ ମଧ୍ୟ ଭୟରେ ହିମ ହୋଇ ଯାଆନ୍ତା । ସେ ଦେଖିଲେ, ସେହି ରାକ୍ଷସ ସର୍ପ ଗୋଟାଏ ହାତୀକୁ କାବୁ କରି ଗିଳିବା ପାଇଁ ଚେଷ୍ଟା କରୁଛି । ସେ ସାପର ମୁହଁ ଗୋଟାଏ ଗୁମ୍ଫା ଭଳି ଦିଶୁଛି ।

ହାତୀ ସଙ୍କଟରେ ପଡ଼ି ପ୍ରଚଣ୍ଡ ରଡ଼ି ଛାଡ଼ୁଥିଲା ଓ ସାପ କବଳରୁ ଖସିଯିବା ନିମନ୍ତେ ଯାବତୀୟ ଚେଷ୍ଟା କରୁଥିଲା । ସେ ସାପ ଦ୍ୱାରା କାବୁ ହେବା ସତ୍ତ୍ୱେ ପଳାଇବାକୁ ଉଦ୍ୟତ ହେଉଥିଲା, କିନ୍ତୁ ପାରୁ ନଥିଲା । ସାପ କ୍ରମେ ତା ଦେହରେ ଅଧିକ ମାତ୍ରାରେ ଜଡ଼େଇ ହୋଇ ଯାଉଥିଲା । ସେ ଦୃଶ୍ୟ ଅତି ଭୀଷଣ ।

ହାତୀଭଳି ପ୍ରକାଣ୍ଡ ପ୍ରାଣୀକୁ କାବୁ କରି ପାରୁଥିବା ସାପ ଯେ କେଡ଼େ ଭୟଙ୍କର ଓ ବଳବାନ୍ ସେକଥା କଳନା କରି ଚନ୍ଦ୍ରବର୍ମାଙ୍କ ବିସ୍ମୟର ସୀମା ନଥାଏ । ଅଳ୍ପ ଦୂରରୁ ସେ ଲୋମହର୍ଷଣକାରୀ ଦୃଶ୍ୟ ଦେଖୁଥିବା ହାତୀପଲ ଭୀଷଣ ନାଦ କରୁଥାନ୍ତି । ଅରଣ୍ୟ ସେ ନାଦରେ କମ୍ପି ଉଠୁଥାଏ । କିନ୍ତୁ ସାପର ସେସବୁ ପ୍ରତି ତିଳେ ମଧ୍ୟ ଭ୍ରୂକ୍ଷେପ ଥିଲା ଭଳି ମନେ ହେଉ ନଥାଏ ।

"ହେ ଭଗବାନ! ମୁଁ କି ଭୟଙ୍କର ଜଙ୍ଗଲ ଭିତରେ ଆସି ପହଞ୍ଚିଗଲି! ଏ ଜଙ୍ଗଲ

ତୁଳନାରେ କାପାଳମୀ ବାସ କରୁଥିବା ଜଙ୍ଗଲ ତ ଉପବନ ସଦୃଶ !" ଏହା କହି ଚନ୍ଦ୍ରବର୍ମା ସେଠାରୁ ଖସିଯିବାର ଉପାୟ କରିବା ନିମନ୍ତେ ଭଗବାନଙ୍କୁ ପ୍ରାର୍ଥନା ଜଣାଇଲେ ।

ଘନ ଜଙ୍ଗଲର ପରିସ୍ଥିତି ଏହିପରି, ସେ ଅନେକ ପଥ ଅତିକ୍ରମ କରି ତାନ୍ତ୍ରିକ ଶଙ୍ଖୁର ନିବାସରେ ପହଞ୍ଚିବେ କିପରି ? ଏ ପ୍ରଶ୍ନ ତାଙ୍କୁ ଖୁବ୍ ଦୁଶ୍ଚିନ୍ତାରେ ପକାଇଲା । ତାଙ୍କର ମନେ ହେଲା ଦୈବୀଶକ୍ତି ତାଙ୍କୁ ରକ୍ଷା ନକଲେ ଏ ଭୀଷଣ ଜଙ୍ଗଲ ଭିତରୁ ସେ ନିସ୍ତାର ପାଇବେ ନାହିଁ । ମୃତ୍ୟୁ ମୁଖରେ ପଡ଼ିବା ହିଁ ସାର ହେବ ।

ହଠାତ୍ ତାଙ୍କର ସାହସ ଯେପରି ଲୁପ୍ତ ହେଉଥିଲା । ଭୀଷଣ ଦୁଶ୍ଚିନ୍ତା ଓ କ୍ଳାନ୍ତିର ଶୀକାର ହୋଇ ସେ ସେହି ଗଛଡାଳ ଉପରେ ସତେ ଅବା ଚେତା ହରାଇବେ, ଏହିପରି ଅନୁଭବ କଲେ ।

ଭାଗ୍ୟକୁ ସେ ଡାଳ ଥିଲା ଖୁବ୍ ପ୍ରଶସ୍ତ । ତାହା ଉପରେ ଭରା ଦେଇ ଚନ୍ଦ୍ରବର୍ମା ଆଖି ବନ୍ଦ କଲେ । ମୁହୂର୍ତ୍ତକ ଭିତରେ ମୁଣ୍ଡରେ ନିକଟ ଅତୀତର ଘଟଣାବଳି ଖେଳିଗଲା । କାହିଁ କେଉଁଠାରୁ ଆସି ସେ କେଉଁଠି ପହଞ୍ଚିଲେଣି । କେତେଦିନ ଏଭଳି ଭୟାବହ ପରିସ୍ଥିତି ଭିତରେ ରହିବାକୁ ହେବ, ପ୍ରତି ମୁହୂର୍ତ୍ତରେ ବିପଦକୁ ସାମ୍ନା କରି ଆଗକୁ ଆଗକୁ ଯିବାକୁ ହେବ, ଏକଥା କିଏ କହି ପାରିବ ? ତେଣେ ନିଜ ରାଜ୍ୟର ଅବସ୍ଥା କ'ଣ ? ତାଙ୍କ ସୁନ୍ଦର ପ୍ରାସାଦ ଓ ପ୍ରିୟ ପ୍ରଜାବର୍ଗ ବର୍ତ୍ତମାନ କିପରି ଭାବରେ ଅଛନ୍ତି ?



ଏସବୁ ପ୍ରଶ୍ନ ବି ବଜୁଲି ଭଳି ମୁଣ୍ଡ ଭିତରେ ଖେଳିଗଲା । ସେ ଅଳ୍ପ ସମୟ ପାଇଁ ତନ୍ଦ୍ରାଗ୍ରସ୍ତ ହୋଇ ପଡ଼ିଲେ । କେତେବେଳେ ସୂର୍ଯ୍ୟାସ୍ତ ହେଲା, କେତେବେଳେ ପକ୍ଷୀମାନେ ନିଜ ନିଜ ନୀଡ଼କୁ ଫେରି କଳରବ ଆରମ୍ଭ କଲେ, ସେକଥା ସେ ବୁଝିପାରିଲେ ନାହିଁ ।

କ୍ରମେ ଚତୁର୍ଦ୍ଦିଗ ଅନ୍ଧକାର ହୋଇ ଆସିଲା । ଆକାଶରେ ତାରା ଫୁଟିଲେ । ଜହ୍ନ ସେଯାଏ ଉଠି ନଥାଏ । ଚତୁର୍ଦ୍ଦିଗ ହୋଇଥାଏ ନିସ୍ତବ୍ଧ ।

ଯେତେବେଳେ ଚନ୍ଦ୍ରବର୍ମା ଆଖି ଖୋଲିଲେ, ସେତେବେଳେ ପ୍ରବଳ ପବନରେ ଗଛଟି ଦୋହଲୁଥାଏ । ସେ ଡାଳଟିକୁ ଖୁବ୍ ଜୋରରେ ଜାବୁଡ଼ି ଧରିବାକୁ ଚେଷ୍ଟା କରିବା ବେଳକୁ ଗୋଟାଏ ଭୀଷଣ ବାତ୍ୟା ସେ ଡାଳକୁ ଭାଙ୍ଗିଦେଲା । ଚନ୍ଦ୍ରବର୍ମାଙ୍କର ମନେ ହେଲା, ପବନ ତାଙ୍କୁ ଉଡ଼ାଇ ନେଇ ଯାଉଛି । ସେ ତଳକୁ ଖସି ପଡୁଥିଲେ । ତେବେ ପବନର ଶକ୍ତି ଯୋଗୁଁ ସିଧା ସଳଖ ନ ଖସି ଟିକଏ ଧୀର ଭାବରେ ଖସୁଥିଲେ ।

ତାଙ୍କର ମନେ ହେଲା ତାଙ୍କ ଆୟୁ ସମାପ୍ତ! ତା'ପରେ ସେ ତଳେ ପଡ଼ିଲେ । କିନ୍ତୁ ଯାହା ଉପରେ ପଡ଼ିଲେ, ତାହା କମ୍ବଳ ଭଳି ନରମ ମନେ ହେଲା ।

"ପଥର ଉପରେ ପଡ଼ିନାହିଁ, ଏହା ମୋର ସୌଭାଗ୍ୟ!" ଏହା କହି ଚନ୍ଦ୍ରବର୍ମା ଉଠିବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କ ତଳେ ଥିବା ଭୂଇଁ ଦୋହଲିବାକୁ ଲାଗିଲା । ସେ ଆଶ୍ଚର୍ଯ୍ୟ





ହୋଇ ତାଙ୍କ ତଳେ କ'ଣ ଅଛି, ତାହା ବୁଝିବାକୁ ଚେଷ୍ଟା କଲେ। ଘାସ ଯୋଗୁଁ ସେ ପ୍ରଥମେ ବୁଝିପାରିଲେ ନାହିଁ। ଘାସ ଆଡ଼େଇ ସେ ଦେଖିବାକୁ ଯାଉଛନ୍ତି, ଦୁଇଟି ପକ୍ଷୀଙ୍କର ବାର୍ତ୍ତାଳାପ ତାଙ୍କ କାନରେ ପଡ଼ିଲା। ସେ ତ ସେମାନଙ୍କ ଭାଷା ବୁଝିବାର ଶକ୍ତି ଆୟତ୍ତ କରିଥିଲେ, ଅତଏବ ସବୁ ସ୍ପଷ୍ଟ ବୁଝି ପାରିଲେ।

"ଆଜି ଏଇଠି ରାତି ବିତାଇଲେ ଭଲ ହେବ। ସେ ଗରମ ପ୍ରବାହ ଉପରୁ ଆସୁଥିବା ପବନରେ ମୋତେ ବେଶ୍ ଆରାମ ଲାଗୁଛି। ଏ ସ୍ଥାନ ଛାଡ଼ି ଯିବାକୁ ମନ କହୁ ନାହିଁ।" ଗୋଟିଏ ପକ୍ଷୀ କହିଲା।

"ହଉ।" ଅନ୍ୟ ପକ୍ଷୀଟି କହିଲା।

ସେତେବେଳେ ତଳେ ଥିବା ଭୂମି ପୁଣି ଦୋହଲିଗଲା। ଚନ୍ଦ୍ରବର୍ମା ପକ୍ଷୀଙ୍କ କଣ୍ଠସ୍ୱର ଅନୁସରଣ କରି ଦେଖିଲେ, ଗୋଟିଏ ବିଶାଳ ପକ୍ଷୀ ଅଦୂରରେ ବସିଛି। ଅନ୍ୟ ପକ୍ଷୀଟି କାହିଁ? ଧୀରେ ଧୀରେ ସେ ଯାହା ବୁଝିଲେ, ସେଥିରେ ସେ ଭୟରେ ଥରିଗଲେ। ସେ ପ୍ରକାଣ୍ଡ ପକ୍ଷୀ ତଳେ ଶୋଇଛି। ତାହାର ପିଠି ଉପରେ ସେ ଆସି ପଡ଼ିଛନ୍ତି। ଯାହା ଘାସ ବୋଲି ମନେ ହେଉଥିଲା, ତାହା ସେହି ପକ୍ଷୀର ବିଶାଳ ପକ୍ଷ ଉପରେ ଥିବା ଛୋଟ ଛୋଟ ପର। ସେ କିପରି ସେ ବିଶାଳ ପକ୍ଷୀ ଉପରୁ ଖସି ଯିବେ ସେକଥା ଚିନ୍ତା କରୁଛନ୍ତି ସେତିକିବେଳେ ଆକାଶରେ ଗୋଟିଏ ଦ୍ୟୁତି ଦେଖାଗଲା। ଗୋଟିଏ ଜ୍ୱଳମାନ ପକ୍ଷୀ ଉଡ଼ି ଆସୁଥିଲା। ଚନ୍ଦ୍ରବର୍ମା ବୁଝିଲେ, ଏହି ଗୋଟିକ ହେଲା ଅଗ୍ନିପକ୍ଷୀ। ଏହାରି ବିଷୟରେ କାପାଳିକୀ ତାଙ୍କୁ କହିଥିଲା।

ଅଗ୍ନିପକ୍ଷୀ ଆସି ଅଳ୍ପ ଦୂରରେ ଅବତରଣ କଲା। ଯେଉଁ ପକ୍ଷୀ ଉପରେ ଚନ୍ଦ୍ରବର୍ମା ବସିଥିଲେ, ସେ ପକ୍ଷୀ ଉଠି ପଡ଼ିଲା। ଚନ୍ଦ୍ରବର୍ମା ଗୋଡ ଖଣ୍ଡ ଭଳି ତା' ପିଠିରୁ ଖସିଯାଇ ତଳେ ପଡ଼ି ଅଳ୍ପ ଦୂରକୁ ଗଡ଼ିଗଲେ।

ସେ ବିଶାଳ ପକ୍ଷୀମାନଙ୍କୁ ଦେଖି, ବିଶେଷ କରି ସେ ଅଦ୍ଭୁତ ଅଗ୍ନିପକ୍ଷୀକୁ ଘେରି ରହିଥିବା ଆଗ୍ନେୟ ବଳୟ ଆଡ଼େ ଅନାଇ ଭୟ ସଙ୍ଗେ




ଚନ୍ଦ୍ରବର୍ମା ଆଖି ଫେରାଇ ପାରୁ ନଥାନ୍ତି । ସେ ବଣର ଗଛଗୁଡ଼ିକ ଖୁବ୍ ଉଚ୍ଚ । ଏ ପକ୍ଷୀମାନେ ଯେ ଗଛଟିମାନ ଭଲ ଦିଶୁଥାନ୍ତି । ଅନ୍ଧାର ଭିତରେ ଅଗ୍ନିପକ୍ଷୀର ଆଲୁଅରେ ଅନ୍ୟ ଦୁଇଗୋଟି ପକ୍ଷୀ ଝଲସି ଉଠୁଥାନ୍ତି ।

ଅଗ୍ନିପକ୍ଷୀ ବସି ପଡ଼ି କହିଲା, "ତମମାନଙ୍କୁ ବହୁତ ଖୋଜିଲିଣି !"

"କାହିଁକି ? କ'ଣ ହେଲା ?" ଗୋଟିଏ ବିଶାଳ ପକ୍ଷୀ ପଚାରିଲା ।

"ମୋ ମାଲିକ ତାନ୍ତ୍ରିକ ଶଂଖ ଜଙ୍ଗଲର ଅନ୍ୟ ପ୍ରାନ୍ତରେ ଥିବା ଗୋଟିଏ ବୁଢ଼ୀ କାପାଳିନୀକୁ ଧରି ଆଣିବାକୁ ମୋତେ ନିର୍ଦ୍ଦେଶ ଦେଇଛି । ଅସୁବିଧା କ'ଣ କି, ଦିନ ଯାକ ଆଖିକୁ କିଛି ଦେଖାଯାଏ ନାହିଁ । ରାତିରେ ମୋ ତେଜ ବୁଢ଼ୀ ଆଖିରେ ପଡିବା ମାତ୍ରେ ସେ ନିଜକୁ ଲୁଚାଇ ରଖିବ । ତେଣୁ ତାକୁ କାବୁ କରିବା ମୋ ପକ୍ଷରେ ସହଜ ନୁହେଁ । ତମେ ଦୁହେଁ ଯାଇ ବୁଢ଼ୀକୁ ଧରି ଆଣନ୍ତ ନାହିଁ ? ମୋ ପାଇଁ ଏତିକି କଲେ ମୁଁ କୃତଜ୍ଞ ହେବ ।" ଅଗ୍ନିପକ୍ଷୀ କହିଲା ।

"ଆମେ ଆଜି ଅତ୍ୟନ୍ତ ହାଲିଆ । ଦିନ ଯାକ ସମୁଦ୍ରର ପୂର୍ବ ଅଞ୍ଚଳରେ ଥିବା ଗୋଟିଏ ଦ୍ୱୀପରେ ବହୁତ ଉଡ଼ାଉଡ଼ି କରିଛୁଁ । ବର୍ତ୍ତମାନ ଆଉ ଉଠିବାର ବଳ ନାହିଁ । ଏ ଉଷୁମ ହାଓ୍ୱାରେ ନିଦ ମାଡ଼ି ଆସୁଛି । ତମେ ଥିଷ୍ଟ ଧର । ଆଗାମୀ କାଲି ତମ କାମ କରିଦେବା ।" ଗୋଟିଏ ଅତିକାୟ ପକ୍ଷୀ କହିଲା ।

"ଦିନବେଳେ ସେ କାପାଳିନୀକୁ ଧରିବା ସହଜ ନୁହେଁ । ସେ ଭୀଷଣ ଧୂର୍ତ୍ତ । ସର୍ବଦା ମନ୍ତ୍ର ଶକ୍ତି ସାହାଯ୍ୟରେ ନିଜକୁ ନିରାପଦ ରଖିଥାଏ । ରାତିଯାକ ସେ ନିଦରେ ଶୁଏ ନାହିଁ । ସତର୍କ ଥାଏ । ଆଜିକାଲି ବୟସ ବହୁତ ହେବାରୁ ଥରେ ଥରେ ତନ୍ଦ୍ରାବିଷ୍ଟ ହୋଇ ରହିଯାଏ । ତମେମାନେ ହଠାତ୍ ତା' ଉପରକୁ ଝାମ୍ପ ଦେବା ଦରକାର—ଯେପରିକି ସେ ମନ୍ତ୍ର ପଢ଼ି ଆତ୍ମରକ୍ଷା ପାଇଁ ସମୟ ପାଇବ ନାହିଁ । ତା'ପରେ ତାକୁ ସିଧା ଶୂନ୍ୟକୁ ଉଠାଇ ନେଇ ଆସିବ ଏବଂ ଶଂଖ ପାଖରେ

ଥୋଇ ଦେବ । କାପାଳିନୀ ଶଂଖୁ ସହ ଶଙ୍ଖୁ ତା ପାଇଁ ଉପଯୁକ୍ତ ଦଣ୍ଡ ପାଇବ । ତମେ ପାଇବ ପୁରସ୍କାର ।” ଅଗ୍ନି ପକ୍ଷୀ କହିଲା ।

“ତମ ମାଲିକଠୁଁ ଆମର କୌଣସି ପୁରସ୍କାର ଦରକାର ନାହିଁ ।” ଗୋଟିଏ ଅତିକାୟ ପକ୍ଷୀ କହିଲା ।

“ତେବେ ଇଚ୍ଛାମାତ୍ରେ ଆମେ ଯେ କୌଣସି ସ୍ଥାନରେ ପହଞ୍ଚି ଯାଇ ପାରିବୁଁ, ଯଦି ଶଂଖୁ ଏପରି କୌଣସି ଶକ୍ତି ଆମକୁ ଦେଇ ପାରେ, ତେବେ ତାହା ଆମର ବହୁତ କାମରେ ଲାଗିବ ।” ଅନ୍ୟ ପକ୍ଷୀଟି କହିଲା ।

“ଆଚ୍ଛା, ମୃତ୍ୟୁ ଏଡ଼ାଇବାର କୌଣସି ମନ୍ତ୍ର ତମ ମାଲିକ ଦେଇ ପାରିବ ?” ପ୍ରଥମ ଅତିକାୟ ପକ୍ଷୀ ପଚାରିଲା ।

ସେମାନଙ୍କ ଆଶା ଦେଖି ଚନ୍ଦ୍ରବର୍ମାକୁ ହସ ଲାଗିଲା । ତାନ୍ତ୍ରିକ ଶଂଖୁ ସତେ ଅବା ଭଗବାନ ! ସେ ବୁଝିଲା ଅତିକାୟ ପକ୍ଷୀ ଦୁଇଟି ବୃଦ୍ଧ ।

ଅଗ୍ନି ପକ୍ଷୀ ସେତେବେଳେ ଏ ପକ୍ଷୀ ଦୁଇଟିଙ୍କ କଥାରେ ଉତ୍ସାହ ଅନୁଭବ କରି ନିଜ ବିଶାଳ ପକ୍ଷ ଦୁଇଟି ଝାଡ଼ୁଥାଏ । ଚାରିଆଡ଼େ ଅଗ୍ନିର ଶିଖା ବାହାରିଲା ଭଳି ମନେ ହେଉଥାଏ । ଚନ୍ଦ୍ରବର୍ମା ନିଜ ଆଖି ଆବୃତ କଲେ । ପକ୍ଷୀ ଦୁଇଟି ସେମାନଙ୍କ ପ୍ରଶ୍ନର ପୁନରାବୃତ୍ତି କଲେ ।

ଅଗ୍ନି ପକ୍ଷୀ ସେମାନଙ୍କୁ କୌଣସି ପ୍ରତିଶ୍ରୁତି ନ ଦେଇ କହିଲା, “ତମେ କାଲି ଆମ ମାଲିକର ନିବାସ ଆଡ଼େ ଥରେ ବୁଲି ଆସି ପାରିବ ? ମୁଁ ତମେମାନଙ୍କ ସହ ତାଙ୍କର ସାକ୍ଷାତ୍ କରାଇ ଦେବି । ତା’ହେଲେ ସବୁ କଥା ସ୍ପଷ୍ଟ ହୋଇଯିବ ।”

ଅତିକାୟ ପକ୍ଷୀ ଦୁଇଟି ସେତେବେଳକୁ ନିଦ୍ରାବସ୍ଥ ହେଲେଣି । ସେମାନେ ବୋଧହୁଏ ଅଗ୍ନି ପକ୍ଷୀ କଥାରେ ହଁ ଭରିଲେ । ଅଗ୍ନି ପକ୍ଷୀ ଉଡ଼ି ଚାଲିଗଲା ।

ଅତିକାୟ ପକ୍ଷୀ ଦୁଇଟି ନିଜ ନିଜ ଥଣ୍ଟ ମାଟିରେ ଠୁକି ଶୋଇ ପଡ଼ିଲେ । (କ୍ରମଶଃ)






# ଅଭିଶାପ

ନିଶା ଗରଜୁଥାଏ । ଭୁହାଙ୍କୁ ଭୁହା ଶୀତଳ ପବନ ସାଙ୍ଗକୁ ଝିପି ଝିପି ବର୍ଷା ହେଉଥାଏ । ଶ୍ୱାନଶ୍ୱାପଦଙ୍କ ରଡ ଓ ବଜ୍ରପାତ ଧ୍ୱନି ମଝିରେ ଶୁଭୁଥାଏ ଅଶରୀରୀ-ମାନଙ୍କ ଅଟ୍ଟହାସ୍ୟ । ପୁଣି ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷ ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମର କ'ଣ ଅଭାବ ଯେ ତମେ ଏ ଦୁର୍ଯ୍ୟୋଗପୂର୍ଣ୍ଣ ରାତିରେ ଏଭଳି ଦୁଃସାହସିକ କାମରେ ହାତ ଦେଇଛ? ଏହା ତୁମର ସୌଭାଗ୍ୟ ନା

ବେତାଳ କଥା



ଦୁର୍ଭାଗ୍ୟ? କାହାର ଅଭିଶାପ ଯୋଗୁଁ ତୁମକୁ ଏଭଳି ଅବସ୍ଥାରେ ପଡ଼ିବାକୁ ହୋଇନାହିଁ ତ? ଅଭିଶାପ ଫଳେ କି ନାହିଁ, ତାହା ଗୋଟିଏ ପ୍ରଶ୍ନ । ସେ ସମ୍ପର୍କରେ ତୁମକୁ ଗୋଟିଏ ଘଟଣା କହୁଛି, ମନଦେଇ ଶୁଣ । ଶୁଣିଲେ ଶ୍ରମ ଭାର ଲାଘବ ମନେ ହେବ ।"

ବେତାଳ କହିଲା: "ଶ୍ରୀପୁର ନଗରୀରେ ଧନଗୁପ୍ତ ନାମକ ଜଣେ ବିତ୍ତଶାଳୀ ବଣିକ ଥିଲେ । ତାଙ୍କର ଥିଲା ବିରାଟ କୋଠା, ସୁନ୍ଦର ବାଗ ବଗିଚା ଓ ଅନେକ ଦାସଦାସୀ । କିନ୍ତୁ ତାଙ୍କର ପିଲାପିଲି ନଥିଲେ ।

ଦିନେ ପାର୍ଶ୍ୱବର୍ତ୍ତୀ ରାଜ୍ୟରୁ ଆସିଥିବା ତାଙ୍କର ଜଣେ ବନ୍ଧୁଙ୍କଠାରୁ ସେ ଶୁଣିଲେ, ଦୁଇ ରାଜ୍ୟର ମଧ୍ୟ ସ୍ଥଳରେ ଥିବା ବଣ ଭିତରେ ଜଣେ ମହାପୁରୁଷଙ୍କ ଆଶ୍ରମ ଅଛି । ସେ ମହାପୁରୁଷ ବ୍ରହ୍ମାନନ୍ଦଙ୍କ ଔଷଧରେ ନିଃସନ୍ତାନ ନାରୀମାନେ ସନ୍ତାନବତୀ ହୋଇ ପାରନ୍ତି ।

ଦିନେ ଶୁଭ ମୁହୂର୍ତ୍ତରେ ଧନଗୁପ୍ତ ରଥାରୋହଣ କରି ସେ ବଣ ଆଡ଼େ ଚାଲିଲେ । ତିନିଦିନ ତିନିରାତି ବାଟରେ ବିତିଗଲା । ତା'ପରେ ବଣ ପଡ଼ିଲା । ବଣକୁ ଲାଗି ରହିଥିବା ଗ୍ରାମରେ ଧନଗୁପ୍ତ ଗୋଟିଏ ରାତି ବିତାଇଲେ । ଗ୍ରାମବାସୀମାନେ ତାଙ୍କୁ ମହାପୁରୁଷ ବ୍ରହ୍ମାନନ୍ଦଙ୍କ ବିଷୟରେ ଅନେକ କଥା କହିଲେ । ସେମାନଙ୍କଠାରୁ ଧନଗୁପ୍ତ ବୁଝିଲେ ଯେ ବ୍ରହ୍ମାନନ୍ଦଙ୍କଠାରୁ କୌଣସି ବର ପାଇବାକୁ ହେଲେ ତାଙ୍କ ଆଶ୍ରମକୁ ଏକା ଯିବାକୁ ପଡ଼େ ।

ରଥକୁ ଗ୍ରାମବାସୀଙ୍କ ଜିମାରେ ରଖି ଧନଗୁପ୍ତ ସକାଳେ ଏକା ଏକା ବଣରେ ପଶିଲେ । ଯେତେବେଳେ ବ୍ରହ୍ମାନନ୍ଦଙ୍କ ଆଶ୍ରମ ତାଙ୍କ ଆଖିରେ ପଡ଼ିଲା, ସେତେବେଳକୁ ସେ ଭୀଷଣ କ୍ଳାନ୍ତ ହୋଇ ପଡ଼ିଥାନ୍ତି । ବାଟ ଚାଲିବା ଅଭ୍ୟାସ ତାଙ୍କର ନଥିଲା । ସେ ଆଶ୍ରମ ବାହାରେ ଗୋଟିଏ ଗଛ ମୂଳରେ ବସି ପଡ଼ିଲେ ।

ଅଳ୍ପ ଦୂରରେ ଝାଡୁ ଧରି ଗୋଟିଏ ପିଲା ଆଶ୍ରମ ଓଳାଉଥିବା ତାଙ୍କ ଆଖିରେ ପଡ଼ିଲା । ସେ ପିଲାଟିକୁ ଡାକିଲେ ଓ କହିଲେ, "ଟିକିଏ

ମୋ ଗୋଡ଼ରେ ହାତ ବୁଲାଇ ଦେଲ୍ଲ! ମୁଁ ପଇସା ଦେବ ।"

"ପଇସା ଲୋଡ଼ା ନାହିଁ । ବଦଳରେ ତମେ ମୋ ଗୋଡ଼ରେ ହାତ ବୁଲାଇ ଦେବ?" ପିଲାଟି କହିଲା ।

ଧନଗୁପ୍ତ ରାଗିଗଲେ ଓ କହିଲେ, "ତୋର ଔଦ୍ଧତ୍ୟ ତ କମ୍ ନୁହେଁ ! ବୟସ ପ୍ରତି ତୋର ସମ୍ମାନ ନାହିଁ ଦେଖୁଛି । ମୂର୍ଖ !"

ପିଲାଟି ହସିଲା ଓ କହିଲା, "ତମର ଯଦି ପୁଅ ଥାନ୍ତା, ତେବେ ତମ ଘରର ଯେଉଁ ଦାସଦାସୀ ତା'ର ସେବା କରନ୍ତେ, ସେମାନେ କ'ଣ ସେ ପୁଅଠାରୁ ବୟସରେ ନିଶ୍ଚୟ ଛୋଟ ହୋଇଥାନ୍ତେ ?"

ପିଲାଟିର ବୁଦ୍ଧିମାନ ଉତ୍ତରରେ ଧନଗୁପ୍ତ ଆହୁରି ରାଗିଗଲେ ଓ କହିଲେ, "ତୋର ଏତେ ବଡ଼ପଣ ଯେ ତୁ ମୋ ପୁଅ ସହ ତୋର ତୁଳନା କରୁଛୁ? ମୋ ପୁଅ ଥିଲେ ସିଏ ହୁଅନ୍ତା କୋଟିଏ ଟଙ୍କା ମୂଲ୍ୟର ସମ୍ପତ୍ତିର ଅଧିକାରୀ । ତୁ ହେଲୁ ସାମାନ୍ୟ ଝାଡୁଦାର । ଏ ପାର୍ଥକ୍ୟ ବିଷୟରେ ତୋର ହେତୁ ନାହିଁ ?"

ପିଲାଟି ପୁଣି ହସିଲା ଓ କହିଲା, "କିଏ ଧନୀ, କିଏ ଗରିବ, ସେକଥା କହିବା ସହଜ ନୁହେଁ । ତମେ କୋଟିଏ ଟଙ୍କା ସମ୍ପତ୍ତିର ମାଲିକ ହୋଇପାର, କିନ୍ତୁ ବର୍ତ୍ତମାନ ତ ତମେ ଆମ ଗୁରୁଙ୍କ ପାଖରୁ ପୁତ୍ର ଭିକ୍ଷା କରିବା ସକାଶେ ଆସିଛ । ଅର୍ଥାତ୍ ତମେ ଭିଖାରୀ !"



ଏହା କହି ପିଲାଟି ଧନଗୁପ୍ତଙ୍କ ପାଦସେବା କରିବାକୁ ବସିବାରୁ ଧନଗୁପ୍ତ ପାଦ ଏଭଳି ଯୋରେ ଛଡ଼ାଇ ନେଲେ ଯେ ତାହା ପିଲାଟିର ଛାତିରେ ବାଜିଲା । ମନେ ହେଲା ଧନଗୁପ୍ତ ଅବା ତାକୁ ଗୋଇଠା ମାରିଲେ ।

ପିଲାଟି ଠିଆ ହୋଇ ପଡ଼ିଲା ଓ ଅଭିଶାପ ଦେବା ଭଙ୍ଗୀରେ କହିଲା, "ତମେ ହୁଏତ ଆମ ଗୁରୁଙ୍କ ଦୟାରୁ ପୁତ୍ର ପାଇବ, କିନ୍ତୁ ତମକୁ ଅନେକ ବର୍ଷ ପର୍ଯ୍ୟନ୍ତ ପୁତ୍ରଠୁ ଦୂରେଇ ରହିବାର ଯେଉଁ ଦୁଃଖ, ସେ ଦୁଃଖ ଭୋଗିବାକୁ ହେବ ।"

ପିଲାଟି ଚାଲିଗଲା । ଆଶ୍ରମର ଜଣେ ବୟସ୍କ ସାଧକ ଧନଗୁପ୍ତଙ୍କୁ ଦେଖି ତାଙ୍କ ଆଡ଼େ ଆସିଲେ ଓ କହିଲେ, "ଗୋପାଳ କାହିଁକି



"ରାଗିଗଲା ?" ଧନଗୁପ୍ତ ବୁଝିଲେ ସେ ବାଳକର ନାମ ଗୋପାଳ । ସେ ସବୁ କହିଲେ । ସାଧକ କହିଲେ, "ଓଃ, ବଡ଼ ଅସୁବିଧା ଜନକ ଅବସ୍ଥା ହୋଇଗଲା ତ! ଗୋପାଳ ତେବେ ଅଭିଶାପ ଦେଲା! ସେ ସିନା ବାଳକଟିଏ, ତେବେ ତା'ର ସାଧନା ଶକ୍ତି ବହୁତ । ଆପଣଙ୍କ ଅହଂକାର କେତେ ସେ ତା'ର ପରୀକ୍ଷା ନେଉଥିଲା । ଆପଣ ହାରିଗଲେ ।"

ସେତେବେଳକୁ ଧନଗୁପ୍ତଙ୍କ ଚେତା ପଶିଲା । ସେ ପଚାରିଲେ, "ଗୋପାଳର ଅଭିଶାପ କପରି ଫଳିବ? ମୋର ଯଦି କେବେ ପୁତ୍ର ଲାଭ ହୁଏ, ତେବେ ତାକୁ ମୁଁ ସର୍ବଦା ଆଖି ଆଗରେ ରଖିବି ।"

ସାଧକ କହିଲେ, "ବାବୁ! ଅଭିଶାପ ଯଦି ଫଳିବାର ଥାଏ, ତେବେ କୌଣସି ନା କୌଣସି ପ୍ରକାରେ ଫଳିବ । ଧର ତମର ପିଲା ହେଲା ବେଳେ ଆଉ କାହାର ପିଲା ହେଲା । ତମ ପିଲା ସହିତ ଯଦି ତା' ପିଲାର ବଦଳ ହୋଇଯିବ, ତେବେ ତମେ ନିଜ ସନ୍ତାନଠାରୁ ଦୂରେଇ ରହିଲ!"

ଏହାପରେ ସାଧକ ଯାଇ ମହାପୁରୁଷ ବ୍ରହ୍ମାନନ୍ଦଙ୍କୁ ଧନଗୁପ୍ତଙ୍କ ଆଗମନ ସମ୍ବାଦ ଦେଲେ । ବ୍ରହ୍ମାନନ୍ଦ ତାଙ୍କୁ ପାଖକୁ ଡକାଇଲେ । ଧନଗୁପ୍ତ ପୁତ୍ରଲାଭ କାମନା ଜଣାଇବାରୁ ବ୍ରହ୍ମାନନ୍ଦ ତାଙ୍କୁ ଗୋଟିଏ ମନ୍ତ୍ରସିଦ୍ଧ ଔଷଧ ଦେଇ କହିଲେ, "ତମ ପତ୍ନୀ ଏହା ସେବନ କରନ୍ତୁ । ଅବିଳମ୍ବେ ତୁମର ପୁତ୍ର ଲାଭ ହେବ ।"

ଧନଗୁପ୍ତ ମହାପୁରୁଷଙ୍କୁ କୃତଜ୍ଞତା ଜଣାଇ ତା'ପରେ ସଙ୍କୋଚ ସହକାରେ ଗୋପାଳ ସହିତ ତାଙ୍କର ଯେଉଁଭଳି ଝଗଡ଼ା ହୋଇଥିଲା ତାହା ଜଣାଇଲେ ଓ ପଚାରିଲେ, "ମହାଭାଗ! ଗୋପାଳର ଅଭିଶାପ କ'ଣ ମୋ ଉପରେ ଫଳିବ? ମୁଁ କ୍ଲାନ୍ତ ହୋଇ ମୋର ବିଚାର ବୁଦ୍ଧି ହରାଇଥିଲି ବୋଲି କଥାବାର୍ତ୍ତାରେ ଭୁଲ କରିଛି ।"

"ଧନଗୁପ୍ତ! ଯିଏ ଅହଂଶୂନ୍ୟ ତଥା ଈଶ୍ୱରଙ୍କ ଉପରେ ନିର୍ଭରଶୀଳ ହୋଇଥିବ, ତା' କ୍ଷେତ୍ରରେ ଅଭିଶାପ କାମ କରିବ ନାହିଁ । ଯଦି କରିବ, ତେବେ ସେହି ଗୋପାଳ ଯାଇ



ଦିନେ ନା ଦିନେ ତମକୁ ତା' ପ୍ରଭାବରୁ ମୁକ୍ତ କରିବ ।" ବ୍ରହ୍ମାନନ୍ଦ କହିଲେ ।

ଏହାପରେ ଧନଗୁପ୍ତ ନିଜ ଘରକୁ ଫେରି ଆସିଲେ । ଗୋପାଳର ଅଭିଶାପ କଥା ସେ ଭୁଲିପାରୁ ନଥାନ୍ତି । ବର୍ଷକ ପରେ ତାଙ୍କ ସ୍ତ୍ରୀ ଗର୍ଭବତୀ ଅବସ୍ଥାରେ ଅସୁସ୍ଥ ହେବାରୁ ତାଙ୍କୁ ନଗରର ବଡ଼ ଚିକିତ୍ସକଙ୍କ ଆରୋଗ୍ୟ ନିକେ-ତନକୁ ନିଆଗଲା । ସେଠାରେ ଆହୁରି କେତେଜଣ ଆସନ୍ନ-ପ୍ରସବା ମହିଳା ଥା'ନ୍ତି ।

ଧନଗୁପ୍ତଙ୍କ ସ୍ତ୍ରୀ ପ୍ରସବ କରିବାର ଅଳ୍ପ ସମୟ ପରେ ତାଙ୍କର ଜଣେ ଦାସୀ ଦେଖିଲା, ଅନ୍ଧାର ଭିତରେ ତରତର ହୋଇ ଗୋଟିଏ ସ୍ତ୍ରୀ ଲୋକ ଧନଗୁପ୍ତଙ୍କ ସ୍ତ୍ରୀଙ୍କ କୋଠରି ଭିତରୁ ବାହାରିଗଲା । ଦାସୀ ପାଟି କରିବା ବେଳକୁ ସେ ସ୍ତ୍ରୀ ଲୋକ କୁଆଡ଼େ ପଳାଇ ଯାଇଥାଏ ।

ଧନଗୁପ୍ତଙ୍କ ମନରେ ସବୁବେଳେ ଭୟ ଥାଏ ଯେ ଗୋପାଳର ଅଭିଶାପ ଫଳିବ । ବୟସ୍କ ସାଧକ ଜଣକ ଯାହା କହିଥିଲେ, ସେଇଆ ହେଲା ବୋଲି ଧନଗୁପ୍ତ ଧରିନେଲେ । ସେ ବହୁତ ଦୁଃଖ ପାଇଲେ । ତେବେ ଦିନେ ଗୋପାଳ ସେ ଗାଁକୁ ଆସିବ ଏବଂ ସେ ତାଙ୍କ ନିଜ ପୁଅକୁ ଫେରି ପାଇବେ, ସେ ଏଇ ଆଶା କଲେ ।

ଯେଉଁ ସନ୍ତାନଟି ତାଙ୍କ ସ୍ତ୍ରୀଙ୍କ ପାଖରେ ଶୋଇଥିଲା, ସେ ପିଲା ସେମାନଙ୍କ ସନ୍ତାନ ନୁହେଁ ବୋଲି ଧନଗୁପ୍ତ ଓ ତାଙ୍କ ସ୍ତ୍ରୀ ଧରିନେଲେ । ସେ ପିଲା ପ୍ରତି ବିଶେଷ ସ୍ନେହ ଯେପରି ନ ଜନ୍ମିବ, ସେଥିପାଇଁ ସେ ଦିଗରେ ସତର୍କ ରହିଲେ ।

କିନ୍ତୁ ଯେତିକି ଦିନ ଗଡ଼ି ଚାଲିଲା, ସେ ପିଲା ପ୍ରତି ସେମାନଙ୍କ ସ୍ନେହ ଯାବ ବଳେ ବଳେ ବଢ଼ିଲା । ପାଞ୍ଚବର୍ଷ ବିତିଗଲା । ଦିନେ ଧନଗୁପ୍ତ ଶୁଣିଲେ, "ଗୋପାଳ ବାବା ବୋଲି ଜଣେ ତରୁଣ ସାଧୁ ତାଙ୍କ ଗାଁକୁ ଆସିଛନ୍ତି । ସେ ଦୌଡ଼ି ଯାଇ ଦେଖିଲେ, ସେ ଗୋପାଳ ବାବା ବ୍ରହ୍ମାନନ୍ଦଙ୍କ ଆଶ୍ରମର ସେହି ଗୋପାଳ । ସେ ସାଧୁଙ୍କ ପାଖକୁ ଯାଇ କହିଲେ, "ସାଧୁଜୀ! ତମ ଅଭିଶାପ ଫଳିଲା । ଏଣିକି ତାହା

ପ୍ରତ୍ୟାହାର କର । ମୋ ଅସଲ ପୁଅକୁ ଆଣି ଦିଅ ।”

ଗୋପାଳ ବାବା ଅଳ୍ପ ହସି କହିଲେ, “ବାବୁ! ତମର ଅସଲ ପୁଅହିଁ ତମଠିଁ ଅଛି । ବୃଥାରେ ତମେ ସନ୍ଦେହ ପୋଷଣ କରୁଛ!” ଏହା ଶୁଣି ଧନଗୁପ୍ତ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ତରୁଣ ସାଧୁଙ୍କୁ ନିଜ ଘରକୁ ନିମନ୍ତ୍ରଣ କରିନେଇ ତାଙ୍କର ଚର୍ଚ୍ଚା କଲେ । ସାଧୁ ତାଙ୍କ ପୁଅକୁ ଆଶୀର୍ବାଦ ଦେଇ ବିଦାୟ ନେଲେ ।

ବେତାଳ ଟିକିଏ ଚୁପ୍ ରହି ଗମ୍ଭୀର କଣ୍ଠରେ ପ୍ରଶ୍ନ କଲା: “ରାଜା! ଗୋପାଳର ଅଭିଶାପ ଫଳିଲା ନାହିଁ କାହିଁକି? ଧନଗୁପ୍ତ କ’ଣ ବାସ୍ତବିକ ଅହଂଶୂନ୍ୟ ଓ ଈଶ୍ୱରଙ୍କ ଉପରେ ନିର୍ଭରଶୀଳ ଥିଲେ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ: “ଗୋପାଳ କହିଥିଲା କି ଧନଗୁପ୍ତଙ୍କୁ ପୁତ୍ରଠାରୁ ଦୂରେଇ ରହିବାର ଦୁଃଖ ପାଇବାକୁ ହେବ । ଧନଗୁପ୍ତ ନିଜ ପୁଅ ସର୍ବଦା ପାଖରେ ଥିବା ସତ୍ତ୍ୱେ ସେ ଆଉ କାହାର ପୁଅ ବୋଲି ଧରିନେବା ଫଳରେ ସେ ଦୁଃଖ ପାଇଲେ । ତେଣୁ ଅଭିଶାପ ଠିକ୍ ଫଳିଲା । ବ୍ରହ୍ମାନନ୍ଦ କହିଥିଲେ କି ଯିଏ ଅହଂଶୂନ୍ୟ ଓ ଈଶ୍ୱରଙ୍କ ଉପରେ ନିର୍ଭରଶୀଳ, ଅଭିଶାପ ତାହା କ୍ଷେତ୍ରରେ ଫଳେ ନାହିଁ । ଧନଗୁପ୍ତ ସେପରି ନଥିଲେ । ତେବେ ସେ ନିଜ ବ୍ୟବହାର ଯୋଗୁଁ ଅନୁତାପ କରିଥିବା ହେତୁ ଅଭିଶାପ ସଂକ୍ଷେପରେ ଫଳିଗଲା ।”

ସର୍ତ୍ତ ଅନୁସାରେ ରାଜା ପୂରା ସମୟ ମୌନ ରହିଲେ ଯାଇ ଶବକୁ ଯଥା ସ୍ଥାନକୁ ନେଇଯାଇ ପାରିଥାନ୍ତେ । କିନ୍ତୁ ବେତାଳକୁ ଉତ୍ତର ଦେବାକୁ ଯାଇ ତାଙ୍କ ମୌନ ଭଙ୍ଗ ହେବାରୁ ଶବ ସହ ଶବସ୍ଥିତ ବେତାଳ ଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ଧନ ପ୍ରାପ୍ତି

ଗୋଟିଏ ଗ୍ରାମରେ ରାମଦାସ ନାମରେ ଚାଷୀଟିଏ ଥାଏ । ଯଥେଷ୍ଟ ଜମି ନ ଥିବାରୁ ପ୍ରତିବର୍ଷ ଶେଷ ବେଳକୁ ସେ ଗାଁ ମହାଜନଙ୍କଠାରୁ କିଛି ଟଙ୍କା ଋଣ ନିଏ ଓ ଫସଲ ଆମଦାନୀ ପରେ ଟଙ୍କା ଶୁଝି ଦିଏ । ଥରେ ଅକାଳ ମରୁଡ଼ି ପଡ଼ିଲା । ସେଥିରେ ବିଚରା ଆଉ ଋଣ ଟଙ୍କା ଶୁଝିପାରିଲା ନାହିଁ ।

ଦିନେ ସେ ମହାଜନଙ୍କ ପାଖକୁ ଯାଇ କହିଲା, "ଆଜ୍ଞା ମୋର ଯାହା ଧନ ସମ୍ପତ୍ତି ସବୁ ଗଲା । ତଥାପି ଆପଣଙ୍କ ଟଙ୍କା ଶୁଝିପାରୁ ନାହିଁ । ମୋତେ କୁହନ୍ତୁ ତ ଆପଣ ଏତେ ଧନ ପାଇଲେ କିପରି ? ତେବେ ମୁଁ ମଧ୍ୟ ସେହି ଉପାୟ କରିବି ।"

"ଆରେ ରାମଦାସ ଏତିକି ତୁ ବୁଝିଲୁ ନାହିଁ ? ଧନ କ'ଣ ଆଉ କିଏ ଦେଇପାରେ ? ସେଇ ଭଗବାନ ରାମହିଁ ମୋତେ ଦେଇଛନ୍ତି ।"

ସେଇଠାରୁ ରାମଦାସ ଫେରିଲା ଘରକୁ ଓ ସ୍ତ୍ରୀକୁ କହିଲା ସେ ରାମଙ୍କଠାରୁ ଧନ ମାଗିବା ପାଇଁ ଯିବ । ଆଉ ତାକୁ ଏତେ କଷ୍ଟ କରିବା ପାଇଁ ପଡ଼ିବ ନାହିଁ । ସ୍ତ୍ରୀ ତାକୁ ତିନୋଟି ବଡ଼ ବଡ଼ ରୁଟି ବାଟରେ ଖାଇବା ପାଇଁ କରି ଦେଲା । ସେତକ ଗାମୁଛାରେ ବାନ୍ଧି ସେ ଚାଲିଲା ରାମଙ୍କ ପାଖକୁ ।

ଯାଉଁ ଯାଉଁ ବାଟରେ ଜଣେ ଗରିବ ବ୍ରାହ୍ମଣଙ୍କୁ ଦେଖିଲା । ତାକୁ ଗୋଟିଏ ରୁଟି ଦେଇ କହିଲା, "ଭାଇ ମୁଁ ରାମଙ୍କୁ ଦେଖା କରିବାକୁ ଯାଉଛି । ଯଦି ତାଙ୍କ ପାଖକୁ ଯିବାପାଇଁ ରାସ୍ତା ଜାଣିଥାଅ ତ କହିଦିଅ ।" ବ୍ରାହ୍ମଣଟି କିଛି ନକହି ଆକାଶ ଆଡ଼କୁ ଥରେ ଚାହିଁ ରୁଟିଟି ଧରି ଚାଲିଗଲା ।

ପୁଣି କିଛିବାଟ ଗଲା ପରେ ରାମଦାସ ଜଣେ ସାଧୁଙ୍କୁ ଭେଟିଲା । ତାଙ୍କୁ ପ୍ରଣାମ କଲା ଓ

ପଚିଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ

ଗୋଟିଏ ରୁଟି ଦେଇ କହିଲା "ସାଧୁଜୀ, କହିପାରିବେ ରାମଙ୍କ ପାଖରେ ପହଞ୍ଚିବାର ରାସ୍ତା କେଉଁଠା ?"

ସାଧୁଜି ମୌନୀ ଥିଲେ। ସୁତରାଂ କିଛି ନକହି ରୁଟିଟି ନେଇ ନିଜ ରାସ୍ତାରେ ଗଲେ।

ଟିକିଏ ଆଗକୁ ଗଲାପରେ ସେ ଏକ ଗରିବ ଲୋକଟିକୁ ଦେଖିଲା। ସେ ତୃତୀୟ ରୁଟିଟି ତାକୁ ଦେଇ ଦେଲା। ଲୋକଟି ରାମଦାସକୁ ପଚାରିଲା, "ଭାଇ ତମେ କୁଆଡ଼େ ଯାଉଛ ?"

"ଶୁଣିଛି ରାମ ସମସ୍ତଙ୍କୁ ଧନ ଦିଅନ୍ତି। ମୁଁ ତାଙ୍କ ପାଖକୁ ଯାଉଛି। ତମେ ସେଠାକୁ ଯିବାର ରାସ୍ତା ଦେଖିଛ ?" ରାମଦାସ କହିଲା।

ଲୋକଟି ସ୍ମିତ ହସି କହିଲା, "ତମେ ଯେଉଁ ରାମଙ୍କୁ ଖୋଜୁଛ, ମୁଁ ହିଁ ସେହି ରାମ। ନିଅ ଏ ଶଙ୍ଖଟି। ଶଙ୍ଖଟି ବଜାଇ ଯାହା ମାଗିବ ତାହା ପାଇବ।" ତା'ପରେ ସେହି ସୁନ୍ଦର ଅଦ୍ଭୁତ ଶଙ୍ଖଟି କିପରି ବଜାଇବ ତାହା ମଧ୍ୟ ସେ ଲୋକଟି ରାମଦାସକୁ ଶିଖାଇଦେଲା। ରାମଦାସ ଲୋକଟିକୁ କୃତଜ୍ଞତା ଜଣାଇ ଫେରିଲା। ସେଇଦିନଠାରୁ ତା'ର ଆଉ କିଛି ଅଭାବ ରହିଲା ନାହିଁ।

ମହାଜନ ଦେଖିଲା ରାମଦାସ କ୍ରମେ ଧନୀ ହେଉଛି। ସେ ଦିନେ ତା'ଠାରୁ ସବୁ କଥା ପଚାରି ବୁଝିଲା ଓ ଶଙ୍ଖଟିକୁ ଚୋରାଇ ନେଇଗଲା। କିନ୍ତୁ ବଜାଇ ନ ଜାଣିବାରୁ କିଛି ଲାଭ ହେଲା ନାହିଁ। ସେ ରାମଦାସକୁ କହିଲା, "ଶଙ୍ଖଟି ମୁଁ ଏଇ ସର୍ତ୍ତରେ ଫେରାଇବି ଯେ ତୁ ଯାହା ପାଇବୁ ମୁଁ ତା'ର ଦ୍ୱିଗୁଣ ପାଇବି।"

"ହେଉ ହେଲା, ଏବେ ଶଙ୍ଖ ଦିଅନ୍ତୁ।" ରାମଦାସ କହିଲା ଓ ମହାଜନଙ୍କଠାରୁ ଶଙ୍ଖ ନେଇ ଚାଲିଗଲା। ଏଣିକି ରାମଦାସର ଯାହା ଧନ ହୁଏ ମହାଜନଙ୍କର ଦୁଇଗୁଣ ହୁଏ। ଦିନେ ସେ ଶଙ୍ଖ ବଜାଇ କହିଲା, "ମୋର ଗୋଟାଏ ଆଖି ଫୁଟିଯାଉ।" ଚାହୁଁ ଚାହୁଁ ମହାଜନଙ୍କର ଦୁଇଟି ଆଖି ଫୁଟି ଗଲା। ସେ ବ୍ୟସ୍ତ ବିକଳ ହୋଇ ରାମଦାସକୁ ଡାକି ନିଜର ସର୍ତ୍ତ ଉଠାଇ ନେଲେ। ଏଣିକି ରାମଦାସ ଶାନ୍ତିରେ ରହିଲା।





# ଗୁପ୍ତଧନ କଥା

କୋଶଳ ଦେଶର ରାଜା ସୂର୍ଯ୍ୟସେନ୍ ସେତେବେଳେ ସତୁରି ବର୍ଷର ବୃଦ୍ଧ । ରାଜକାର୍ଯ୍ୟ ଭଲ କରି ଦେଖାଶୁଣା କରିପାରୁ ନଥା'ନ୍ତି । ଏଇ ସୁଯୋଗ ନେଇ ଚୋର, ଡକାଏତମାନେ ରାଜ୍ୟରେ ଉପଦ୍ରବ କରିବାକୁ ଲାଗିଲେ । ପଡ଼ୋଶୀ ରାଜ୍ୟର ରାଜାମାନେ ମଧ୍ୟ ଏଇ ଅବସରରେ ରାଜ୍ୟ ଆକ୍ରମଣ କରିବା ପାଇଁ ପ୍ରସ୍ତୁତ ହେଲେ ।

ରାଜା ବଡ଼ ଚିନ୍ତିତ ହେଲେ । ବାରମ୍ବାର ସେ ଏ ସଙ୍କଟର ସମାଧାନ ବିଷୟରେ ମନ୍ତ୍ରୀଙ୍କୁ ପଚାରୁଥାନ୍ତି । ମନ୍ତ୍ରୀ ତାଙ୍କୁ ଧୈର୍ଯ୍ୟ ଧରିବାକୁ ପରାମର୍ଶ ଦେଉଥାନ୍ତି । ସତେ ଅବା ସେ କାହାରି ଆଗମନ ପାଇଁ ଦିନ ଗଣୁଥାନ୍ତି!

ରାଜା ସୂର୍ଯ୍ୟସେନ୍‌ଙ୍କ ପୁତ୍ର ଚନ୍ଦ୍ରସେନ୍ ଅନ୍ୟ କୌଣସି ଦେଶକୁ ବିଦ୍ୟାଧ୍ୟୟନ ପାଇଁ ଯାଇଥା'ନ୍ତି । ସେ ଶୀଘ୍ର ବିଦ୍ୟାଧ୍ୟୟନ ଶେଷ କରି ଫେରି ଆସିଲେ । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ ମନ୍ତ୍ରୀ ଆଶୁଶର୍ମାଙ୍କୁ ଖୁବ୍ ପ୍ରଭାବିତ କଲା । ସେ ଖୁସି ହୋଇ ରାଜାଙ୍କୁ ଏକାନ୍ତରେ କହିଲେ, "ମହାରାଜ, ଯୁବରାଜ ଚନ୍ଦ୍ରସେନଙ୍କ ହାତରେ ରାଜ୍ୟର ଦାୟିତ୍ୱ ସମର୍ପଣ କରି ଆପଣ ନିଶ୍ଚିନ୍ତ ହୁଅନ୍ତୁ । ମୋର ସମ୍ପୂର୍ଣ୍ଣ ବିଶ୍ୱାସ ସେ ସମସ୍ତ ସମସ୍ୟାର ସମାଧାନ କରିଦେଇ ପାରିବେ ।"

ମନ୍ତ୍ରୀଙ୍କ କଥା ଶୁଣି ରାଜା ଟିକିଏ ଚିନ୍ତିତ ଦେଖାଗଲେ । କାରଣ ସେ ଭାବୁଥିଲେ ଯେତେ ବିଦ୍ୟା ଅଧ୍ୟୟନ କଲେ ମଧ୍ୟ ଜୀବନ କ୍ଷେତ୍ରରେ ତା'ର କୌଣସି ଅଭିଜ୍ଞତା ନାହିଁ । ପୁଣି ରାଜ୍ୟରେ ଏବେ ଅରାଜକତା ବ୍ୟାପିଛି । ତେଣୁ ଏଇ ସନ୍ଧିକ୍ଷଣରେ ଜଣେ ଅନଭିଜ୍ଞ ଯୁବକ ହାତରେ ରାଜ୍ୟଭାର ସମର୍ପଣ କରିବା ବିଜ୍ଞତାର ବିଷୟ ହେବ ନାହିଁ । ପୁତ୍ର ଉପରେ

ରମେଶ



ତାଙ୍କର ଅଗାଧ ବିଶ୍ୱାସ ଥିଲା । ତଥାପି ତା'ର ବ୍ୟାବହାରିକ ଜ୍ଞାନ ଓ ବିବେକ ବୁଦ୍ଧି କେତେଦୂର ଉନ୍ନତ ତାହା ଜାଣିବା ପାଇଁ ସେ ଯୁବରାଜଙ୍କୁ ପାଖକୁ ଡ଼କାଇଲେ ।

ଯୁବରାଜ ଚନ୍ଦ୍ରସେନଙ୍କୁ ରାଜା ରାଜ୍ୟର ପରିସ୍ଥିତି ଓ ସମସ୍ୟାମାନଙ୍କ ବିଷୟରେ ଏକ ବିଷଦ୍ ବିବରଣୀ ଦେବା ପରେ ପଚାରିଲେ, "କୁମାର, ତୁମେ ଏ ବିଷୟରେ କ'ଣ ଭାବୁଛ ? କିଭଳି ଭାବରେ ଏସବୁ ସମସ୍ୟାର ସମାଧାନ ହୋଇପାରିବ ?"

ଚନ୍ଦ୍ରସେନ କିଛି ସମୟ ଚିନ୍ତା କରି କହିଲେ, "ବାବା, ପ୍ରଥମେ ଆମେ ପଡ଼ୋଶୀ ରାଜ୍ୟ ବିଷୟରେ କିଛି ସମାଧାନ କରିବା । ସେଥିପାଇଁ ଆମର ଦୁର୍ଗକୁ ମଜବୁତ୍ କରିବା ଓ ସୈନ୍ୟ ସଂଗଠନ ଭଲ ଭାବରେ କରିବା ।"

ରାଜା ପଚାରିଲେ, "ତାହା ତ ଠିକ୍ । କିନ୍ତୁ ଯେତେବେଳେ ରାଜ୍ୟର ଆଭ୍ୟନ୍ତରୀଣ ଅବସ୍ଥା ଭଲ ନୁହେଁ, ସେତେବେଳେ ବାହ୍ୟ ଶତ୍ରୁ ପାଇଁ କ'ଣ ପଦକ୍ଷେପ ନିଆଯାଇ ପାରେ ?"

ଚନ୍ଦ୍ରସେନ କହିଲେ, "ଦେଖନ୍ତୁ, ଚୋର ଡାକୁମାନେ ସମ୍ପତ୍ତି ସବୁ ନେଇ ପଳାଇଯାଇ ନାହାନ୍ତି । ଏଇ ଦେଶରେ ଅଛନ୍ତି । ଆମେ ସେମାନଙ୍କୁ ଧରି ଲୋକମାନଙ୍କୁ ତାଙ୍କ ଅପହୃତ ସମ୍ପତ୍ତି ଫେରାଇ ଦେଇ ପାରିବା ।"

"ତାହାହେଲେ କ'ଣ ତୁମ ଦୃଷ୍ଟିରେ ବାହ୍ୟଶତ୍ରୁ ଅଧିକ ମାରାତ୍ମକ ?" ରାଜା ପଚାରିଲେ ।

"ମୋର ବିଚାର ଠିକ୍ ସେଇଆ । ଘରର ଶତ୍ରୁକୁ ଯେପରି ହେଉ ଦମନ କରି ହେବ । କିନ୍ତୁ ଇତିମଧ୍ୟରେ ମଗଧର ରାଜା ବୀରସିଂହ ଯଦି ଆକ୍ରମଣ କରି ରାଜ୍ୟ ନେଇଯା'ନ୍ତି ତେବେ ତ ଆମର ସର୍ବସ୍ୱ ନଷ୍ଟ ହେବ ।" କୁମାର ଚନ୍ଦ୍ରସେନ୍ କହିଲେ ।

ଯୁବରାଜଙ୍କ ପରାମର୍ଶ ଅନୁସାରେ ରାଜା କୋଷାଧ୍ୟକ୍ଷ ବଳଭଦ୍ରଙ୍କୁ ଡ଼କାଇ ଦୁର୍ଗ ମରାମତି ପାଇଁ ସବୁ ଖର୍ଚ୍ଚ ଦେବାକୁ କହିଲେ । ଏତେ ଖର୍ଚ୍ଚ ହେବା କଥା ଶୁଣି ବଳଭଦ୍ର ବ୍ୟସ୍ତ ହୋଇ ପଡ଼ି କହିଲେ, "ମହାରାଜ, ଦୁର୍ଗ



ପାଇଁ ଏତେ ବେଶି ଖର୍ଚ୍ଚ ହେବା ଭଳି ଅର୍ଥ ତ ରାଜକୋଷରେ ନାହିଁ ।"

ତା'ପରେ ସୂର୍ଯ୍ୟସେନ୍ ଭାବୁଥା'ନ୍ତି କିପରି ଏହାର ସମାଧାନ କରାହେବ, ଏହି ସମୟରେ ସେନାପତି ବିଜୟବର୍ମା ଆସି ପହଞ୍ଚିଲେ । ସେ ଗୁପ୍ତଚରଙ୍କ ପାଖରୁ ବୁଝି ରାଜାଙ୍କୁ ଏକ ଖବର ଦେବାର ଅଛି ବୋଲି କହିଲେ । ରାଜା କୌତୁହଳୀ ହେବାରୁ ସେ କହିଲେ, "ମହାରାଜ, ଶୁଣିଲି ଜଣେ ସନ୍ନ୍ୟାସୀ କେଉଁଠୁ ଆସି ଆମ ରାଜ୍ୟରେ ପହଞ୍ଚିଛନ୍ତି । ଯାହା ଘରେ କିଛି ଗୁପ୍ତଧନ ମୋତା ହୋଇ ଅଛି ସେ କଥା ସେ ଜାଣି ଦେଉଛନ୍ତି । ଆମେ ମଧ୍ୟ ତାଙ୍କୁ ପଚାରି ବୁଝିବା । ଯଦି ରାଜବାଟୀରେ କେଉଁଠାରେ ଗୁପ୍ତଧନ ବା ପୋତାଧନ ଥାଏ ତେବେ ସେଇଥିରେ ଆମର ସମସ୍ୟା ସମାଧାନ ହୋଇଯିବ ।"

ରାଜାଙ୍କର ସେନାପତିଙ୍କ ରାଜଭକ୍ତି ଉପରେ ଅଗାଧ ବିଶ୍ୱାସ ଥିଲା । ତେଣୁ ସେ ରଥ ସଜିଲ୍ କରି ସେନାପତିଙ୍କୁ ସଙ୍ଗରେ ଧରି ସାଧୁଙ୍କ ପାଖକୁ ଗଲେ । ସେଠାରେ ପହଞ୍ଚି ସେ ସାଧୁଙ୍କ ସମ୍ମୁଖରେ ରାଜ୍ୟର ସବୁ ସମସ୍ୟା ଉପସ୍ଥାପିତ କଲେ ଓ ସେସବୁର ସମାଧାନ ଦିଗରେ ସାଧୁଙ୍କର ମତ କ'ଣ ଜାଣିବାକୁ ଚାହିଁଲେ ।

ସାଧୁ କିଛି ସମୟ ଆଖିବୁଜି ଧ୍ୟାନରେ ବସିଲେ । ତା'ପରେ ଧ୍ୟାନରୁ ଉଠି କହିଲେ, "ରାଜନ୍, ମୁଁ ସୂକ୍ଷ୍ମଦୃଷ୍ଟି ବଳରେ ଦେଖିପାରୁଛି ଯେ ପ୍ରଥମତଃ ଶତ୍ରୁମାନେ ଆପଣଙ୍କୁ ଆକ୍ରମଣ କରିବାକୁ ଚାହାନ୍ତି ନାହିଁ । ଦ୍ୱିତୀୟତଃ ଧନ ବିଷୟରେ ମୁଁ ଦେଖିପାରିଲି ଯେ ଆପଣଙ୍କ ଦୁର୍ଗର ଦୁଇ ମୁଖ୍ୟ ଦ୍ୱାର ପାଖରେ ଥିବା କାନ୍ଥ ତଳେ ସୁନାମୋହରରେ ପୂର୍ଣ୍ଣଥିବା କଳସୀ ସବୁ ପୋତା ହୋଇ ଅଛି । ଆପଣ ସେସବୁ ଖୋଳି ନେଇ ରାଜ୍ୟର କାମରେ ଲଗାଇ ପାରନ୍ତି ।"

ରାଜା ସାଧୁଙ୍କ କଥା ଶୁଣି ଅତି ଖୁସି ହେଲେ । ତା'ପରେ ସାଧୁଙ୍କୁ ପ୍ରଣାମ ଦେଇ ନଗରକୁ ଲେଉଟି ଆସିଲେ ।

ଯୁବରାଜଙ୍କୁ ପାଖକୁ ଡାକି ରାଜା ସବୁ କଥା କହିଲେ । ସବୁ ଶୁଣି ଯୁବରାଜ ଅଳ୍ପ ଆଶ୍ଚର୍ଯ୍ୟ



ହେଲେ ଓ କହିଲେ, "ଦେଖନ୍ତୁ, ବର୍ତ୍ତମାନ ପରିସ୍ଥିତିରେ ଦୁର୍ଗର ଦ୍ୱାରକୁ ଖୋଲାଇବା ବୁଦ୍ଧିମାନର କାମ ହେବ ନାହିଁ । ପୁଣି ଦୁର୍ଗର ଦ୍ୱାର ଓ କାନ୍ଥ ଖୋଳିଲେ ଯାଇ ସୁନା ମିଳିବ, ଆଉ କେଉଁଠି ନାହିଁ ? ରାଜ୍ୟ ଭିତରେ ବା ରାଜଧାନୀ ଭିତରେ ଅନ୍ୟ କେଉଁଠି ହେଲେ ବି କିଛି କିଛି ପୋତା ଧନ ତ ଅବଶ୍ୟ ଥିବ! ଯାହାହେଉ ସେ ସାଧୁଙ୍କୁ ଟିକିଏ ପରୀକ୍ଷା କରିବା ପାଇଁ ମୋତେ ସପ୍ତାହେ ସମୟ ଦିଅନ୍ତୁ ।"

ରାଜା ଯୁବରାଜଙ୍କ କଥାରେ ରାଜି ହେଲେ ।

ରାଜସଭାର ବିଦୂଷକ ମଣିଭଦ୍ରଙ୍କ ସହିତ ଯୁବରାଜ କିଛି ପରାମର୍ଶ କଲେ । ଏକ ଘୋଟ ପାତ୍ରରେ କିଛି ସୁନା ମୋହର ରଖି ମଣିଭଦ୍ରଙ୍କ ବଗିଚାରେ ପୋତିଲେ । ପରଦିନ ମଣିଭଦ୍ର ଯାଇ ସାଧୁଙ୍କ ପାଖରେ ପହଞ୍ଚି ଜଣାଇଲେ କି ତାଙ୍କର ବହୁତ ଅର୍ଥ କଷ୍ଟ ପଡ଼ୁଛି । ଯଦି ସାଧୁ ଦୟାକରି କିଛି କହିଦିଅନ୍ତେ କେଉଁଠି କିଛି ପୋତାଧନ ମିଳିବ!

ସାଧୁ କହିଲେ, "ଦେଖ, ଆଜି ବହୁତ ଡେରି ହୋଇ ଯାଇଛି । ତମେ କାଲିକି ଆସ, ମୁଁ କହିବି ।"

ମଣିଭଦ୍ର ଆସି ସବୁକଥା ଯୁବରାଜଙ୍କୁ କହିଲେ । ରାତିରେ ମଣିଭଦ୍ରଙ୍କ ବଗିଚା ପଛପଟେ ଯୁବରାଜ ଓ ମଣିଭଦ୍ର ଗୋଟିଏ ଗଛ ଆଢୁଆଳରେ ଲୁଚି ଦେଖିଲେ ଯେ ସେନାପତିଙ୍କ ଦୁଇ ଗୁପ୍ତଚର ଆସି ବଗିଚାରେ ଗୋଟାଏ ଆମ୍ବଗଛ ତଳେ ମାଟି ଖୋଳି କିଛି ପୋତୁଛନ୍ତି । ପୋତାପୋତି ସରିବା ପରେ ସେମାନେ ଚାଲିଗଲେ ।

ତା'ପରେ ଯୁବରାଜ ଓ ମଣିଭଦ୍ର ସେଠାକୁ ଯାଇ ଖୋଳି ଦେଖିଲେ କିଛି ସ୍ୱର୍ଣ୍ଣମୁଦ୍ରା କଳସୀରେ ରଖି ସେମାନେ ପୋତିଛନ୍ତି ।

ସକାଳ ହେଲା । ବିଦୂଷକ ଯାଇ ସାଧୁଙ୍କ ପାଖରେ ପହଞ୍ଚିଲେ । ତତ୍‌କ୍ଷଣାତ୍ ସାଧୁ ବିଦୂଷକଙ୍କୁ କହିଲେ, "ବତ୍ସ, ମୁଁ ନିଜର ଯୋଗଦୃଷ୍ଟି ବଳରେ ଦେଖିପାରୁଛି ଯେ ତୁମ ଘର ପଛପଟ ବଗିଚାରେ ଆମ୍ବଗଛ ତଳେ କିଛି ପୋତାଧନ ଅଛି । ତମେ ସେଇଠି ଖୋଳି

ଦେଖି ଧନ ପାଇବ ଓ ତମର ଆର୍ଥିକ ଅନାଟନ ମେଣ୍ଟିଯିବ ।"

ମଣିଭଦ୍ର ସେଠାରୁ ଲେଉଟି ଆସି ସବୁକଥା ଯୁବରାଜଙ୍କୁ କହିଲେ । ଯୁବରାଜ ତତ୍‌କ୍ଷଣାତ୍ ମଣିଭଦ୍ରଙ୍କୁ ଧରି ରାଜାଙ୍କ ପାଖରେ ପହଞ୍ଚିଲେ ଓ ସମସ୍ତ ଘଟଣା କହିଲେ । ସେ କହିଲେ, "ଦେଖନ୍ତୁ, ଯଦି ସେ ପ୍ରକୃତ ସାଧୁ ହୋଇଥା'ନ୍ତେ ତେବେ ଆମେ ଯୋଡିବା ଗପ ସେ ସୂକ୍ଷ୍ମଦୃଷ୍ଟିରେ ଦେଖି ପାରିଥା'ନ୍ତେ, ପୁଣି ସେହି ଗୁପ୍ତଚର ଦୁହିଁଙ୍କ ଦ୍ୱାରା ଏସବୁ କାମ ଆମ ନିଜ ଆଖିରେ ଦେଖିଲୁ । ସେ ବିଶ୍ୱାସ ଜନ୍ମାଇବା ପାଇଁ ଏପରି କରିଛି । ଜଣାଯାଏ ସେ ସାଧୁ ନୁହେଁ, ଶତ୍ରୁ ରାଜ୍ୟର ଗୁପ୍ତଚର ।"

ସବୁ ଶୁଣି ରାଜା ଦୁଃଖିତ ହେଲେ ଓ କହିଲେ, "ହୋଇପାରେ ସେ ଗୁପ୍ତଚର । କିନ୍ତୁ ଆମ ରାଜ୍ୟର ସେନାପତିଙ୍କୁ କ'ଣ ସେ ହାତରେ ରଖିଛି ? ଆମ ସେନାପତି ତ ବଡ଼ ରାଜଭକ୍ତ । ତାଙ୍କୁ ସନ୍ଦେହ କରିବାକୁ ମୋର ମନ ମାନୁନାହିଁ ।"

"ତେବେ ଗୋଟିଏ କଥା କରାଯାଉ, ମୁଁ ସେ ଆଶ୍ରମକୁ ଛଦ୍ମବେଶରେ ଯିବି । ଆଉ ଯଦି ସାଧୁଙ୍କ ଦର୍ଶନାର୍ଥୀମାନଙ୍କ ମଧ୍ୟରେ ସେ ଗୁପ୍ତଚର ଦୁହିଁଙ୍କୁ ଦେଖିବି ତେବେ ତାଙ୍କୁ ବନ୍ଦୀ କରି ନେଇ ଆସିବି । ତା'ପରେ ସବୁ କଥା ସହଜରେ ଜଣା ପଡିଯିବ ।" ଯୁବରାଜ କହିଲେ ରାଜା ସମ୍ମତ ହେଲେ ।



ଯୁବରାଜ ଚନ୍ଦ୍ରସେନ ଓ ରାଜା ଦୁହେଁ ଛଦ୍ମବେଶରେ ଦଶଜଣ ଅସ୍ତ୍ରଧାରୀ ସୈନିକଙ୍କୁ ନେଇ ଗଲେ । ସୈନିକମାନେ ସାଧୁଙ୍କ ଆଶ୍ରମ ବାହାରେ ବୁଦା ଉହାଡ଼ରେ ଲୁଚି ରହିଲେ । ଯୁବରାଜ ଲୁଚି ଲୁଚି ଯାଇ ଆଶ୍ରମ ପଛପଟେ ଏକ ସ୍ଥାନରେ ଠିଆ ହେଲେ ଯେଉଁଠାରୁ ସେ ଭିତରର ସବୁ କିଛି ଦେଖି ପାରିବେ ।

କିଛି ସମୟ ପରେ । ରାତି ଟିକିଏ ବେଶି ହେବାରୁ ଦର୍ଶନାର୍ଥୀମାନେ ଚାଲିଗଲେଣି । ଏଇ ସମୟରେ ସେନାପତି ଦୁଇ ଗୁପ୍ତଚରଙ୍କୁ ଧରି ପହଞ୍ଚିଲେ ।

ସାଧୁ ସେନାପତିଙ୍କୁ ଦେଖି ପଚାରିଲେ, "ସେନାପତି, ରାଜାଙ୍କର ମୋର ଯୋଗ-

ବୃଷ୍ଟି ଉପରେ ଖୁବ୍ ବିଶ୍ୱାସ ହୋଇ ଯାଇଛି ନା ?"

"ନିଶ୍ଚୟ ନିଶ୍ଚୟ । ବିଦୂଷକ ଘରର ଘଟଣାରୁ ରାଜାଙ୍କ ବିଶ୍ୱାସ ଆହୁରି ଦୃଢ଼ ହୋଇ ଯାଇଛି ଓ ଅନ୍ୟାନ୍ୟ ରାଜକର୍ମଚାରୀମାନେ ମଧ୍ୟ ବିଶ୍ୱାସ କରି ଯାଇଛନ୍ତି । ମୋତେ ଲାଗୁଛି ବିନେ ଦୁଇଦିନ ମଧ୍ୟରେ ରାଜା ଦୁର୍ଗର ମୁଖ୍ୟ ଦ୍ୱାର ଖୋଲିବେ ଗୁପ୍ତଧନ ପାଇଁ ।" ସେନାପତି କହିଲେ ।

ଏତିକି ଶୁଣିବା ପରେ ଯୁବରାଜ ସୈନିକମାନଙ୍କୁ ଇସାରା ଦେଲେ । ସମସ୍ତେ ମିଶି ସାଧୁ, ସେନାପତି ଓ ଗୁପ୍ତଚର ଦ୍ୱୟଙ୍କ ଉପରେ ଆକ୍ରମଣ କରି ସେମାନଙ୍କୁ ବନ୍ଦୀ କଲେ ।

ଯୁବରାଜଙ୍କ କର୍ମକୁଶଳତା ଓ ବୁଦ୍ଧି ଦେଖି ରାଜା ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ତାଙ୍କ ମୁଣ୍ଡରୁ ବୋଝ ଗଲା ଯେପରି ! ସେ ମନ୍ତ୍ରୀ ଆଶୁଶର୍ମାଙ୍କୁ ଡାକି କହିଲେ, "ମନ୍ତ୍ରୀବର, ଆପଣଙ୍କ ବିଚାର ପ୍ରକୃତରେ ଉତ୍ତମ । ଯୁବରାଜଙ୍କର ରାଜ୍ୟ ଚଳାଇବାର ଦକ୍ଷତା ଅସାଧାରଣ । ଆପଣ ତାଙ୍କର ରାଜ୍ୟାଭିଷେକ ପାଇଁ କାର୍ଯ୍ୟକ୍ରମ ପ୍ରସ୍ତୁତ କରନ୍ତୁ । ମୁଁ ଯଦି ସାଧୁ ଓ ସେନାପତି କଥାରେ ପ୍ରଭାବିତ ହୋଇ ଦୁର୍ଗ ଭାଙ୍ଗିଥା'ନ୍ତି ସୁନା ଲୋଭରେ, ତେବେ ତତ୍କ୍ଷଣାତ୍ ବୀରସିଂହ ଆମ ରାଜ୍ୟ ଦଖଲ କରିଥା'ନ୍ତେ ।"

ସପ୍ତାହକ ପରେ ବଡ଼ ଧୂମ୍‌ଧାମ୍‌ରେ ଚନ୍ଦ୍ରସେନ୍‌ଙ୍କର ଅଭିଷେକ ଉତ୍ସବ ହେଲା । ରାଜା ହେବା ମାତ୍ରେ ସେ ଘୋଷଣା କଲେ ଗୁପ୍ତଚରମାନେ ରାଜାଙ୍କ ଅଧୀନରେ ରହିବେ ସେନାପତିଙ୍କ ଅଧୀନରେ ନୁହେଁ ।

ମଗଧ ଦେଶର ରାଜା ବିଫଳ ମନୋରଥ ହୋଇ ଆକ୍ରମଣ କରିବାର ଯୋଜନା ବନ୍ଦ କଲେ ।

ସୂର୍ଯ୍ୟସେନ୍ ପୁତ୍ରଙ୍କ କୃତିତ୍ୱରେ ଅତ୍ୟନ୍ତ ଆନନ୍ଦ ଓ ମୁଗ୍ଧ ହୋଇଥିଲେ । ଏବେ ତାଙ୍କୁ ରାଜ୍ୟ ଭାର ସମର୍ପଣ କରି ଶାନ୍ତିରେ ଧର୍ମକାର୍ଯ୍ୟ କରି ଶେଷ ଜୀବନ ବିତାଇଲେ ।






# ସୁବର୍ଣ୍ଣ ମୟୂର

ଅନେକ ପୂର୍ବ କାଳରେ ଥରେ ବୋଧିସତ୍ତ୍ୱ କାଶୀନଗରୀ ଉପକଣ୍ଠରେ ଥିବା ଗୋଟିଏ ଅରଣ୍ୟରେ ସୁନାର ମୟୂର ରୂପରେ ଜନ୍ମ ନେଇଥିଲେ । ଥରେ ଥରେ କାଠୁରିଆମାନେ ବା ବନବାଟରେ ଯାଉଥିବା ଲୋକେ ସେ ମୟୂରକୁ ଦେଖି ପକାଉଥିଲେ । ସେ ମୟୂର କଥା ଚତୁର୍ଦ୍ଦିଗରେ ବ୍ୟାପି ଯାଇଥାଏ । କିନ୍ତୁ ତାକୁ ଦେଖୁଥିଲେ ଖୁବ୍ କମ୍ ଲୋକେ ।

ରାଣୀ ବି ସେ ମୟୂର କଥା ଶୁଣିଥାନ୍ତି । ଦିନେ ରାତିରେ ସେ ସ୍ୱପ୍ନରେ ସୁନାର ମୟୂରକୁ ଦେଖିଲେ ଓ ସକାଳେ ସେ ମୟୂରଟି ତାକୁ ଆଣିଦେବା ନିମନ୍ତେ ରାଜାଙ୍କୁ ଅନୁରୋଧ କଲେ । ରାଜା ଜଣକ ପରେ ଜଣେ ଶିକାରୀ ବଣ ଭିତରକୁ ପଠାଇଲେ । କିନ୍ତୁ କେହି ସେ ମୟୂରକୁ ଧରି ପାରିଲେ ନାହିଁ । ରାଣୀ ଓ ରାଜା ଉଭୟେ ହତାଶ ହେଲେ ।

କେତେ ବର୍ଷ ବିତିଗଲା । ରାଣୀ ବାରମ୍ବାର ସେ ମୟୂର କଥା କହୁଥାନ୍ତି । ଏହିପରି ଭାବରେ ଦିନେ ସେ ମରିଗଲେ । ତାଙ୍କ କାମନା ପୂରଣ କରିପାରି ନଥିବାରୁ ରାଜାଙ୍କ ମନରେ ଘୋର ଦୁଃଖ ରହିଗଲା । ତାଙ୍କର ସବୁ କ୍ରୋଧ ଯାଇ ସେ ସୁନାର ମୟୂର ଉପରେ ପଡିଲା । ମୟୂର ଉପରେ ପ୍ରତିଶୋଧ ନେବା ନିମନ୍ତେ ସେ ଘୋଷଣା କଲେ, "ବଣରେ ଅଛି ଗୋଟିଏ ସୁନାର ମୟୂର । ଯିଏ ତାକୁ ମାରି ତା' ମାଂସ ଖାଇବ, ସେ ଅମର ହେବ ଏବଂ ଚିରକାଳ ଉଜ୍ଜ୍ୱଳବର୍ଣ୍ଣର ଯୁବକ ହୋଇ ରହିବ ।"

ଏହାପରେ ରାଜା ମରିଗଲେ । ତାଙ୍କ ପୁଅ ସିଂହାସନରେ ବସିବା ମାତ୍ରେ ସେ ମୟୂରକୁ ଧରି ଆଣିବାକୁ ବଦ୍ଧ ପରିକର ହୋଇ ବଣ ଭିତରକୁ ଜଣେ କୁଶଳୀ ଶିକାରୀକୁ ପଠାଇଲେ ।

ସେ ଶିକାରୀ କେତେଦିନ ଯାଏ ଉଦ୍ୟମ କରି ଦିନେ ସୁନାର ମୟୂରକୁ ଧରି ପକାଇଲା ଓ ତାକୁ ଆଣି ତରୁଣ ରାଜାଙ୍କୁ ଦେଲା । ରାଜା ଆଶ୍ଚର୍ଯ୍ୟ ହେଲେ ଓ ଆନନ୍ଦିତ ହେଲେ । ମୟୂରକୁ ଦେଖି ତାଙ୍କ ମନରେ ତା' ପ୍ରତି ଖୁବ୍ ଶ୍ରଦ୍ଧା ଭାବ ଆସିଲା ମଧ୍ୟ ।

ମୟୂର ପଚାରିଲା, "ରାଜା ! ତମେ ମୋତେ କାହିଁକି ଧରି ଆଣିଛ ?"

"ତମ ମାଂସ ଖାଇଲେ ଜଣେ ଚିର ଯୁବକ ରହିବ ଏବଂ ଅମର ହେବ ।" ରାଜା କହିଲେ ।

ମୟୂର ହସିଲା ଓ କହିଲା, "ରାଜା ! ତୁମେ ମୋତେ ମାରିବ ଅର୍ଥ ମୁଁ ନିଜେ ଅମର ନୁହେଁ । ମୋତେ ଖାଇ ତୁମେ କିପରି ଅମର ହେବ ?"

ରାଜା ଏହାର ଉତ୍ତର ଦେଇ ନପାରି କହିଲେ, "ତୁମ ରଙ୍ଗ ସୁନା ଭଳି । ତୁମକୁ ଖାଇଲେ ଜଣକର କାନ୍ତି ସୁନା ଭଳି ହେବ ।"

"ରାଜା ! ଅନ୍ୟ କୌଣସି ସୁନା ରଙ୍ଗର ଜୀବ ଖାଇ ମୋର କାନ୍ତି ଯଦି ଏଭଳି ହୋଇଥାନ୍ତା, ତେବେ ମୋତେ ଖାଇଲେ ତୁମ କାନ୍ତି ସୁନାଭଳି ହୁଅନ୍ତା । କିନ୍ତୁ ମୋ କାନ୍ତି ଏଭଳି ହେବାର କାରଣ ଭିନ୍ନ । ଏକଦା ମୁଁ ଏ ରାଜ୍ୟର ରାଜା ଥିଲି । ସେତେବେଳେ ଅନେକ ପୁଣ୍ୟ କାର୍ଯ୍ୟ କରିଥିଲି । ତାହାରି ପ୍ରଭାବରେ ମୋର ରଙ୍ଗ ଏପରି ହୋଇଛି ।"

ଆଶ୍ଚର୍ଯ୍ୟ ହୋଇ ରାଜା ପଚାରିଲେ, "ତମେ ରାଜା ଥିଲ ବୋଲି ପ୍ରମାଣ ?"

"ଶୁଣ । ମୁଁ ଗୋଟିଏ ରତ୍ନଖଚିତ ବିଶେଷ ରଥ ଆବିଷ୍କାର କରିଥିଲି । ମୃତ୍ୟୁ ପୂର୍ବରୁ ଗୋପନରେ ତାହା ଉଦ୍ୟାନର ଏକ କୋଣରେ ପୋତି ଦେଇଥିଲି । ସେଠାରେ ଖୋଳି ପାର ।" ମୟୂର କହିଲା ।

ରାଜା ଯଥା ସ୍ଥାନରେ ଖୋଳିଲେ ଓ ସେ ରଥ ଉଦ୍ଧାର କଲେ । ମୟୂରକୁ ସେ ପ୍ରଣିପାତ କରି ଗୁରୁ ରୂପେ ପ୍ରାସାଦରେ ରଖିଲେ ।






ଭାରତର ନଦନଦୀ

# ଗଙ୍ଗାବତରଣ

ଅଯୋଧ୍ୟାର ରାଜା ସଗର ଥରେ ଏକ ମହାନ୍ ଯଜ୍ଞ କରିବାକୁ ସ୍ଥିର କଲେ । ବିଧି ଅନୁସାରେ ଗୋଟିଏ ବଳବାନ ଓ ସୁଦର୍ଶନ ଅଶ୍ୱ ତାଙ୍କ ପତାକା ବହନ କରି ମୁଲକ ପରେ ମୁଲକ ଅତିକ୍ରମ କରି ଚାଲିଲା । ତାକୁ ଅନୁସରଣ କରୁଥାନ୍ତି ରାଜାଙ୍କ ପୁତ୍ରଗଣ ଓ ସୈନ୍ୟବାହିନୀ ।

ଦିନେ ରାଜପୁତ୍ର ଓ ସୈନ୍ୟମାନେ ବିଶ୍ରାମ କରୁଥିବା ବେଳେ ଇନ୍ଦ୍ର ଗୋଟିଏ ରାକ୍ଷସ ରୂପରେ ଆସି ଅଶ୍ୱଟିକୁ ଅପହରଣ କରି ପଳାଇଗଲେ । ସେ ତାକୁ ପାତାଳପୁରୀକୁ ନେଇ ଯାଇ କପିଳମୁନିଙ୍କ ଆଶ୍ରମ ଭିତରେ ବାନ୍ଧି ଦେଇ ଖସିଗଲେ ।





ରାଜା ସଗରଙ୍କର ଥିଲେ ଷାଠିଏ ସହସ୍ର ପୁତ୍ର । ସେମାନେ ନାନା ଦିଗରେ ଅନ୍ୱେଷଣ କରି ଅବଶେଷରେ ପାତାଳପୁରୀରେ ପହଞ୍ଚିଲେ । ସେଠାରେ କପିଳମୁନିଙ୍କ ଆଶ୍ରମରେ ଅଶ୍ୱକୁ ଦେଖି ସେମାନେ ଭାବିଲେ କପିଳହିଁ ତାକୁ ଚୋରି କରିଛନ୍ତି । ସେମାନେ ମୁନିଙ୍କୁ ଅପମାନ ଦେଲେ ।



ମୁନି ପ୍ରଥମେ ଆଶ୍ଚର୍ଯ୍ୟ ହେଲେ । ତା'ପରେ ସେ ହେଲେ କ୍ରୁଦ୍ଧ । "ତମେମାନେ ଏଡ଼େ ଅବିବେକୀ ଓ ଅଭଦ୍ର ! ରାଜ୍ୟ ଶାସନର ଅଧିକାର ତ ଦୂରର କଥା, ତମେମାନେ ଭସ୍ମୀଭୂତ ହେବା ଉଚିତ !" ମୁନି କହିଲେ । ତତ୍‌କ୍ଷଣାତ୍ ଜଳି ଉଠିଲା ଅଗ୍ନି । ଷାଠିଏ ହଜାର ରାଜପୁତ୍ର ଭସ୍ମସ୍ତୂପରେ ପରିଣତ ହେଲେ ।

ବହୁ ବର୍ଷ ବିତିଗଲା । ରାଜା ସଗରଙ୍କ ନାତି ଅଂଶୁମାନ ବହୁ କଷ୍ଟରେ ପାତାଳପୁରୀକୁ ଯାଇ କପିଳମୁନିଙ୍କୁ ତୁଷ୍ଟ କରି ଜାଣିଲେ ଯେ ଯଦି ବ୍ରହ୍ମାଙ୍କ କମଣ୍ଡଳୁରେ ଅବରୁଦ୍ଧ ଗଙ୍ଗା ଭୂପୃଷ୍ଠରେ ଅବତରଣ କରେ ଓ ପରେ ପାତାଳପୁରୀକୁ ପ୍ରବାହିତ ହୋଇ ଭସ୍ମସ୍ତୂପ ଉପର ଦେଇ ବହିଯାଏ, ତେବେ ରାଜପୁତ୍ରମାନେ ଜୀବନ୍ୟାସ ପାଇବେ ।






ଅଂଶୁମାନଙ୍କର ଏ ଜ୍ଞାନକୁ କାମରେ ଲଗାଇଲେ ତାଙ୍କ ନାତି ଭଗୀରଥ । ସେ ନିଜ ପୂର୍ବପୁରୁଷମାନଙ୍କୁ ଉଦ୍ଧାର କରିବା ନିମନ୍ତେ ଦୃଢ଼-ସଂକଳ୍ପ ହୋଇ ବହୁ କାଳଯାଏ ବ୍ରହ୍ମାଙ୍କୁ ଧ୍ୟାନ କଲେ । ବ୍ରହ୍ମା ତାଙ୍କ ତପସ୍ୟାରେ ତୁଷ୍ଟ ହୋଇ ନିଜ କମଣ୍ଡଳୁରୁ ଗଙ୍ଗାଙ୍କୁ ମୁକ୍ତ କରିବାକୁ ସମ୍ମତ ହେଲେ ।

କିନ୍ତୁ ସ୍ୱର୍ଗଲୋକରୁ ଗଙ୍ଗା ଯେତେବେଳେ ସ୍ରୋତ ରୂପେ ଭୂପୃଷ୍ଠରେ ଅବତରଣ କରିବେ, ସେତେବେଳେ ତ ପୃଥିବୀ ବିଦୀର୍ଣ୍ଣ ହୋଇଯିବ । ଏକମାତ୍ର ଶିବହିଁ ସେ ପ୍ରଚଣ୍ଡ ଆଘାତ ସହ୍ୟକରି ପାରିବେ ବୋଲି ଭଗୀରଥ ବୁଝି ପାରିଲେ । ଭଗୀରଥଙ୍କ ପ୍ରାର୍ଥନା ଶୁଣି ଶିବ ସେ ଭୂମିକା ତୁଲାଇବାକୁ ରାଜି ହେଲେ ।






ପ୍ରଥମେ ଶିବଙ୍କ ଜଟାମଣ୍ଡିତ ଶିରରେ ଅବତରଣ କରି ତା'ପରେ ଗଙ୍ଗା ଭଗୀରଥଙ୍କୁ ଅନୁସରଣ କରି ବହମାନ ହେଲେ । ବହୁ ଅଞ୍ଚଳ ଭିତର ଦେଇ ଗତି କରି, ଶାଖା ଉପଶାଖା ଦ୍ୱାରା ଭୂମିକୁ ଶସ୍ୟଶ୍ୟାମଳ କରି ଅବଶେଷରେ ଗଙ୍ଗା ଭୂପୃଷ୍ଠରୁ ଅବନମିତ ହୋଇ ପାତାଳଲୋକରେ ପ୍ରବିଷ୍ଟ ହେଲେ ।

ବହୁକାଳ ଧରି କପିଳମୁନିଙ୍କ ଆଶ୍ରମ ଭିତରେ ରହିଥିଲା ଏକ ଭସ୍ମସ୍ତୂପ— ଷାଠିଏ ସହସ୍ର ରାଜପୁତ୍ରଙ୍କ ଦୁର୍ଦ୍ଦଶାର ସ୍ମାରକୀ । ଗଙ୍ଗା ସ୍ରୋତ ସେ ସ୍ତୂପ ଉପର ଦେଇ ବହମାନ ହେବା ମାତ୍ରେ ସେ ରାଜପୁତ୍ରମାନେ ଜୀବନ୍ୟାସ ପାଇଲେ । ଏହିପରି ଭାବରେ ଭଗୀରଥ ଏକ ଅପୂର୍ବ କାର୍ଯ୍ୟ ସାଧନ କଲେ ।





ଗଙ୍ଗା ଭାରତର ସବୁଠାରୁ ବିଖ୍ୟାତ ତଥା ପବିତ୍ର ନଦୀ । ହିମାଳୟର ଗୋମୁଖଠାରେ ଗଙ୍ଗା ରୂପ ଗ୍ରହଣ କରନ୍ତି । ଗଙ୍ଗୋତ୍ରୀଠାରେ ଏହାଙ୍କ ରୂପ ଅଧିକ ସ୍ପଷ୍ଟ ହୁଏ । ପ୍ରାଚୀନ ତୀର୍ଥ ଋଷିକେଶ ପାଖରୁ ସୁଦୃଶ୍ୟ ନଦୀ ରୂପେ ଗଙ୍ଗା ସମତଳ ଭୂମି ଆଡେ ପ୍ରବାହିତା ହୁଅନ୍ତି ।

ଗଙ୍ଗା ତୀରରେ ଅବସ୍ଥିତ ବହୁତ ତୀର୍ଥ । ହରିଦ୍ୱାର ଏବଂ ବାରାଣସୀ ସେସବୁ ଭିତରୁ ଦୁଇ ପ୍ରଖ୍ୟାତ ପ୍ରାଚୀନ ପୁଣ୍ୟସ୍ଥାନ । କାହିଁ କେଉଁ କାଳରୁ ଅସଂଖ୍ୟ ତୀର୍ଥଯାତ୍ରୀ ଏସବୁ ନଗରୀକୁ ବୁଲି ଯାଆନ୍ତି । ହରିଦ୍ୱାରଠାରେ ଅନୁଷ୍ଠିତ ହେଉଥିବା କୁମ୍ଭମେଳା ପୃଥିବୀର ବୃହତ୍ତମ ମେଳା ।






ଗଙ୍ଗା ତୀରରେ ଗଢ଼ି ଉଠିଥିବା ଅପେକ୍ଷାକୃତ ନୂତନ ସହରମାନଙ୍କ ଭିତରେ ବିଖ୍ୟାତ ହେଲ୍ଲ କଲିକତା । କଲିକତା ସମୀପରେ ଗଙ୍ଗାର ନାମ ହୁଗୁଳି । ସେଠାରୁ କ୍ରମେ ଗଙ୍ଗା ବହୁ ଧାରା ଉପଧାରାରେ ବିଭକ୍ତ ହୋଇ ବିଖ୍ୟାତ ସୁନ୍ଦରବନ ଅରଣ୍ୟ ମଧ୍ୟ ଦେଇ ସମୁଦ୍ରରେ ପଡ଼ିଛନ୍ତି । ଏହି ଅରଣ୍ୟ ମହାବଳ ବାଘର ରାଜ୍ୟ ।



# ସଚ୍ଚା ଚିକିତ୍ସକ

ବେଦପୁରର ରାଜା ସୋମେଶ୍ୱର ଦେବ ଜଣେ ସୁଶାସକ ଥିଲେ । ହଠାତ୍ ତାଙ୍କୁ ଗୋଟାଏ ଚର୍ମରୋଗ ହେଲା । ତାହା ଦ୍ୱାରା ତାଙ୍କ ମୁହଁ ଓ ଦେହର ଭିନ୍ନ ଭିନ୍ନ ସ୍ଥାନରେ ବଡ଼ ବଡ଼ ଦାଗମାନ ଦେଖାଦେଲା । ରାଜା ସର୍ବଦା ଶାସନ କାର୍ଯ୍ୟରେ ବ୍ୟସ୍ତ ରହି ସେ ରୋଗ ପ୍ରତି ଦୃଷ୍ଟି ଦେଉ ନଥାନ୍ତି । ସେ ରୋଗ ଯୋଗୁଁ ତାଙ୍କୁ କିଛି କଷ୍ଟ ବି ହେଉ ନଥାଏ । ତେବେ ଯେତେବେଳେ ଦାଗର ସଂଖ୍ୟା ବଢ଼ିଗଲା, ସେ ଚିକିତ୍ସା ସକାଶେ ରାଜବୈଦ୍ୟଙ୍କୁ କହିଲେ ।

ରାଜବୈଦ୍ୟ ଅନେକ ପ୍ରକାର ଔଷଧ ଦେଲେ । କିନ୍ତୁ ସେଥିରେ ରାଜାଙ୍କ ରୋଗ ଭଲ ହେଲା ନାହିଁ । ତାଙ୍କ ସହକାରୀମାନେ ବି ରୋଗର ଉପଶମ ଦିଗରେ କିଛି କରିପାରିଲେ ନାହିଁ । ରାଜବୈଦ୍ୟଙ୍କ ସମ୍ବନ୍ଧୀ ଜଣେ ବରିଷ୍ଠ ବୈଦ୍ୟ । ରାଜବୈଦ୍ୟ ତାଙ୍କ ସହାୟତା ଲୋଡ଼ିଲେ । କିନ୍ତୁ ସମ୍ବନ୍ଧୀଙ୍କ ଚିକିତ୍ସାରେ ବି ରାଜା ମୋଟେ ଉପକାର ପାଇଲେ ନାହିଁ ।

ରାଜ୍ୟର ସୀମାରେ ଅବସ୍ଥିତ ଗୋଟିଏ ଗ୍ରାମରେ ସୀତାରାମ ନାମକ ଜଣେ ବୈଦ୍ୟ ରହୁଥାନ୍ତି । ତାଙ୍କ ବାପା ଜେଜେବାପା ବି ବୈଦ୍ୟ ଥିଲେ । ସୀତାରାମଙ୍କ ଘରେ ଅନେକ ପ୍ରାଚୀନ ଆୟୁର୍ବେଦ ପୋଥି ଗଚ୍ଛିତ ରହିଥାଏ । ସୀତାରାମ ସେସବୁ ଗଭୀର ମନଯୋଗ ସହକାରେ ଅଧ୍ୟୟନ କରୁଥାନ୍ତି । ସେଥିରୁ ତାଙ୍କର ବହୁତ ଜ୍ଞାନ ଲାଭ ହୋଇଥାଏ । ତେବେ ସେ ପ୍ରଚାରର ପକ୍ଷପାତୀ ନଥିଲେ । ତେଣୁ ଚିକିତ୍ସା ଶାସ୍ତ୍ରରେ ତାଙ୍କ ପାଣ୍ଡିତ୍ୟ କଥା ବିଶେଷ କେହି ଜାଣି ନଥାନ୍ତି ।

ଥରେ ସେ ରାଜଧାନୀକୁ ଆସିଥାନ୍ତି । ଦୂରରୁ ରାଜାଙ୍କୁ ଦେଖି ସେ ବୁଝିପାରିଲେ ରାଜା କି

ସୁରେନ୍ଦ୍ର



ପ୍ରକାର ବ୍ୟାଧି ଭୋଗୁଛନ୍ତି । ପରଦିନ ସେ ରାଜାଙ୍କୁ ଭେଟିବାକୁ ଇଚ୍ଛା କଲେ । କିନ୍ତୁ ରାଜାଙ୍କୁ ଚିକିତ୍ସା କରିବାକୁ ହେଲେ ପ୍ରଥମେ ରାଜବୈଦ୍ୟଙ୍କ ଅନୁମତି ଲୋଡ଼ା । ସେ ରାଜବୈଦ୍ୟଙ୍କୁ ଭେଟିଲେ ।

ରାଜବୈଦ୍ୟ ସୀତାରାମଙ୍କୁ ଆୟୁର୍ବେଦର ଅନେକ ଜଟିଳ ତତ୍ତ୍ୱ ବିଷୟରେ ପ୍ରଶ୍ନ କଲେ । ସୀତାରାମ ପ୍ରତି ପ୍ରଶ୍ନର ଯଥାର୍ଥ ଉତ୍ତର ଦେଉଥାନ୍ତି । ସେ ଯେତିକି ଯେତିକି ଠିକ୍ ଉତ୍ତର ଦେଉଥାନ୍ତି, ରାଜବୈଦ୍ୟଙ୍କ ମୁହଁ ସେତିକି ସେତିକି ଗମ୍ଭୀର ଦେଖାଯାଉଥାଏ । ଶେଷକୁ ସେ ପାଟି କରି କହିଲେ, "ବାବୁ! ଆମେମାନେ ସାରା ଜୀବନ ଗବେଷଣା କରୁଛୁ, ନୂଆ ନୂଆ ଔଷଧ ବି ପ୍ରସ୍ତୁତ କରୁଛୁ । ରାଜାଙ୍କ ଉଦ୍ୟାନର ଗୋଟିଏ ବିରାଟ ଅଂଶରେ ଜଡ଼ିବୁଟି ଉତ୍ପାଦନ କରୁଛୁ । ଆମ ଚିକିତ୍ସାରେ ଯେତେବେଳେ ରାଜା ଭଲ ହେଲେ ନାହିଁ, ତମ ଚିକିତ୍ସାରେ ସେ ଭଲ ହୋଇଯିବେ ବୋଲି ତମେ କଳ୍ପନା କରୁଛ କିପରି ? ତମେ ଭାବୁଛ ରାଜାଙ୍କ ଚିକିତ୍ସା କରି ସୁନାମ ଅର୍ଜନ କରିବ । କିନ୍ତୁ ରାଜାଙ୍କ ସ୍ୱାସ୍ଥ୍ୟ ବିଷୟରେ ଯାହାର ଯଥେଷ୍ଟ ଅଭିଜ୍ଞତା ନଥିବ, ସେ ସେଥିରେ ହାତଦେବା ମୋଟେ ଉଚିତ ନୁହେଁ । ତମେ ଜଣେ ସାଧାରଣ ଗାଉଁଲି ବୈଦ୍ୟ । ଗାଁ ଲୋକଙ୍କ ଚିକିତ୍ସା କରି ସନ୍ତୁଷ୍ଟ ନହୋଇ ହଠାତ୍ ରାଜାଙ୍କ ଚିକିତ୍ସା କରିବା ଭଳି ଉଚ୍ଚାକାଂକ୍ଷା ପୋଷଣ କଲ କାହିଁକି ? ତମେ କ'ଣ ନା କ'ଣ ଔଷଧ ଦେବ, ସେଥିରେ ରାଜାଙ୍କ ବ୍ୟାଧି ବଢ଼ିଯିବ । ମୁଣ୍ଡକାଟ ହେବ ଆମର । ଯାଅ, ପଳାଅ । ଆଉ କେବେ ନଅର ପାଖ ପଶିବ ନାହିଁ ।"

ସୀତାରାମ ରାଜାଙ୍କୁ ଚିକିତ୍ସା କରି ସୁନାମ ଅର୍ଜନ କରିବେ, ସେଭଳି ଉଦ୍ଦେଶ୍ୟ ତାଙ୍କର ନଥିଲା । ରାଜା ବ୍ୟାଧିରେ ପୀଡିତ; ସେ ବ୍ୟାଧିର ଔଷଧ ତାଙ୍କୁ ଜଣା । ତେଣୁ ରାଜାଙ୍କୁ ଭଲ କରିଦେବା ତାଙ୍କର କର୍ତ୍ତବ୍ୟ ବୋଲି ସେ ମନେ କରିଥିଲେ । ରାଜବୈଦ୍ୟ ଏଥିରେ ଖୁସି ହେବେ ବୋଲି ସେ ଆଶା କରିଥିଲେ ।

ସୀତାରାମ ଲେଉଟି ଗଲେ । କିନ୍ତୁ ରାଜାଙ୍କ ପାଇଁ ତାଙ୍କ ମନ ଖରାପ ହୋଇଗଲା । ପନ୍ଦର ଦିନ ପରେ ସେ ପୁଣି ଆସି ରାଜବୈଦ୍ୟଙ୍କୁ ନିବେଦନ କଲେ କି ରାଜାଙ୍କୁ ଚିକିତ୍ସା କରିବା ନିମନ୍ତେ ତାଙ୍କୁ ଥରେ ସୁଯୋଗ ଦିଆଯାଉ । ସେ କୌଣସି ପାରିଶ୍ରମିକ ନେବେ ନାହିଁ ।

ସେଥିରେ ରାଜବୈଦ୍ୟ ଆହୁରି ଖପା ହେଲେ ଓ କହିଲେ, "ଆହା ! ରାଜାଙ୍କ ପ୍ରତି କି ଦୟା ! ଆମେ ତେବେ ରାଜାଙ୍କଠୁଁ ଦରମା ନେଇ ଅନ୍ୟାୟ କରୁଛୁଁ ! ଯାଅ; ଆଉ ଥରେ ଆସିଲେ କଟୁଆଳ ହାତରେ ତମକୁ ଧରାଇ ଦେଇ ସଜା ଦେବ ।"

ସୀତାରାମ ଲେଉଟି ଗଲବେଳେ ଦେଖିଲେ ଉଆସ ପଛପଟ ବଗିଚା ଭିତରୁ ଜଣେ ଯୁବକ ବାହାରି ଯାଉଛି । ତାକୁ ବି ସେହି ଏକା ବ୍ୟାଧି ହୋଇଛି । ସୀତାରାମ ବୁଝିଲେ ସେ ରାଜାଙ୍କ ବଗିଚାର ଜଣେ ମାଳୀ । ସୀତାରାମ ସହରର ଗୋଟିଏ ଧର୍ମଶାଳାରେ ସାତଦିନ ରହିଲେ ଓ ମାଳୀର ଚିକିତ୍ସା କଲେ । ମାଳୀ ଭଲ ହୋଇଗଲା । ସେ ବିଦାୟ ନେଲେ ।

ଦିନେ ରାଜା ବଗିଚାରେ ପଦଚାରଣା କରୁଥାନ୍ତି । ହଠାତ୍ ତାଙ୍କ ଆଖି ପଡ଼ିଗଲା ସେ ମାଳୀ ଟୋକା ଉପରେ । ସେ ତାକୁ ପାଖକୁ ଡାକି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "କିରେ, ତୋତେ ତ ମୋ ରୋଗ ଭଳି ରୋଗ ହୋଇଥିଲା ନା କ'ଣ !"

"ହଁ, ଆଜ୍ଞା, ହୋଇଥିଲା । ତେବେ ମୁଁ ମାମୁଲି ଲୋକ, ଜଣେ ମାମୁଲି ବୈଦ୍ୟଙ୍କ



ଚିକିତ୍ସାରେ ଭଲ ହୋଇଗଲି ।" ନମ୍ର ଢଙ୍ଗରେ ମାଳି ଉତ୍ତର ଦେଲା ।

ରାଜା ତା'ଠୁଁ ସୀତାରାମଙ୍କ ଠିକଣା ନେଲେ । ରାତିରେ ଛଦ୍ମବେଶରେ ଯାଇ ସୀତାରାମଙ୍କ ଘରେ ପହଞ୍ଚିଲେ । ସୀତାରାମ ତାଙ୍କୁ ଔଷଧ ଦେଲେ । ରାଜା ଦୁଇ ତିନିଦିନ ଛଡ଼ାରେ ଯାଇ ଔଷଧ ସେବନ କରି ଦଶ ବାର ଦିନରେ ସୁସ୍ଥ ହୋଇଗଲେ ।

"ଆପଣଙ୍କ ଜ୍ଞାନକୁ ଧନ୍ୟ!" ସେ କହିଲେ ।

"ବାବୁ! ମୋର ଦୁର୍ଭାଗ୍ୟ, ଆମ ରାଜାଙ୍କ ରୋଗ ଜାଣି ବି ତାଙ୍କୁ ଭଲ କରିପାରିଲି ନାହିଁ!" ସୀତାରାମ କହିଲେ ।

"କାହିଁକି?" ଛଦ୍ମବେଶୀ ରାଜା ପଚାରିଲେ ।

ସୀତାରାମ ସେଉଠୁ ସବୁ ଗପିଲେ । ରାଜା ଚାଲିଗଲେ ।

ପରଦିନ ରାଜ ନଅରରୁ କେତେଜଣ ଅମାତ୍ୟ ଆସି ସୀତାରାମଙ୍କୁ ସମ୍ବର୍ଦ୍ଧନା ଜଣାଇ ଦରବାରକୁ ନେଇଗଲେ । ସୀତାରାମ ସେତେବେଳେ ଯାଇ ଜାଣିଲେ ଯେ ସେ ଛଦ୍ମବେଶୀ ରାଜାଙ୍କୁହିଁ ଭଲ କରିଛନ୍ତି ।

"ସଭାସଦ୍ ବର୍ଗ! ଯେଉଁ ରାଜବୈଦ୍ୟ ମୋ ବ୍ୟାଧି ଭଲ ହେବା ଅପେକ୍ଷା ସେ ନିଜେ ସବୁଠୁଁ ବଡ଼ ବୈଦ୍ୟ ବୋଲାଇବାକୁ ଅଧିକ ମୂଲ୍ୟ ଦେଲେ, ସେ ବୈଦ୍ୟଙ୍କୁ ଧିକ୍ । ଆଜିଠାରୁ ସୀତାରାମ ରାଜବୈଦ୍ୟ ହେବେ ।" ରାଜା ଘୋଷଣା କଲେ ।

"ମହାରାଜ! ମୋତେ ସେ ପଦ ଦିଅନ୍ତୁ ନାହିଁ । ମୁଁ ଥରେ ରାଜବୈଦ୍ୟ ହୋଇଗଲେ ସାଧାରଣ ଗରିବ ରୋଗୀମାନେ ମୋ ଚିକିତ୍ସାରୁ ବଞ୍ଚିତ ହେବେ । ବରଂ ମୋ ପାଇଁ ଗୋଟିଏ ଦାତବ୍ୟ ଚିକିତ୍ସାଳୟ ଖୋଲି ଦିଅନ୍ତୁ ।" ସୀତାରାମ କହିଲେ ।

"ବେଶ୍ । ତାହା ମଞ୍ଜୁର ହେଲା । କିନ୍ତୁ ରାଜବୈଦ୍ୟ ଆସନ ବି ତୁମର!" ରାଜା କହିଲେ ।





# ଧର୍ମପଥର ଯାତ୍ରୀ

କୁଣ୍ଡଳ ରାଜ୍ୟର ରାଜା ସତ୍ୟାନନ୍ଦ ଥିଲେ 'ଅତ୍ୟନ୍ତ ନ୍ୟାୟପରାୟଣ ଓ ଧାର୍ମିକ। ସତ୍ୟପଥରେ ରହିବା ପାଇଁ ସେ ନିଜ ଜୀବନ ବିସର୍ଜନ ଦେବାକୁ ମଧ୍ୟ ଦ୍ୱିଧା କରନ୍ତେ ନାହିଁ।

ରାଜ୍ୟର ଲୋକେ ତାଙ୍କୁ ଧନ୍ୟ ଧନ୍ୟ କହୁଥିଲେ।

ରାଜା ସତ୍ୟାନନ୍ଦ ଥରେ ବେମାର ପଡ଼ିଲେ। ସେ ତ ଜଣେ ସାଧକ-ପ୍ରାୟ ଲୋକ ଥିଲେ। ତେଣୁ ସେ ବୁଝି ପାରିଲେ କି ତାଙ୍କ ମୃତ୍ୟୁ ଆସନ୍ନ। ତାଙ୍କର ବିଜ୍ଞ ମନ୍ତ୍ରୀ ମଧ୍ୟ ତାଙ୍କୁ ପରାମର୍ଶ ଦେଲେ କି ସେ ତାଙ୍କର ଯୋଗ୍ୟ ପୁତ୍ର ଶ୍ରବଣାନନ୍ଦଙ୍କୁ ରାଜ୍ୟ ଭାର ଦେଇ ଦିଅନ୍ତୁ। କାରଣ, ବଞ୍ଚି ରହିଲେ ମଧ୍ୟ ସେ ରାଜ୍ୟ ଶାସନ କରିବାକୁ ସମର୍ଥ ହେବେ ନାହିଁ।

ରାଜା ସତ୍ୟାନନ୍ଦ ଯୁବରାଜଙ୍କୁ ନିଜ ଶେଯ ପାଖକୁ ଡକାଇଲେ ଓ କହିଲେ, "ପୁତ୍ର! ସଂସାରରେ କେହି ଚିରକାଳ ରହିବ ନାହିଁ। ମୋ ଭୂମିକା ଶେଷ ହେଲା।"

"ନା, ନା, ପିତା, ଏପରି କହନ୍ତୁ ନାହିଁ। ଆପଣଙ୍କର ଏମିତି କିଛି ହୋଇ ନାହିଁ। କିଏ ବା ଅସୁସ୍ଥ ନ ହୁଏ? ଆପଣ ସେ ନେଇ ଏପରି ଭାବନା କରୁଛନ୍ତି କାହିଁକି?" ଯୁବରାଜ ବିଚଳିତ ହୋଇ କହିଲେ।"

"ପୁତ୍ର! ମୁଁ ବିଚଳିତ ବୋଧ କରୁଛି ବୋଲି ତୁମ୍ଭର ଧାରଣା ହେଲା କାହିଁକି? ମୁଁ ଶାନ୍ତ ଓ ସନ୍ତୋଷ ସହକାରେ ମୃତ୍ୟୁ ବରଣ କରିବାକୁ ପ୍ରସ୍ତୁତ। ମୋ ଶାସନ କାଳରେ ମୁଁ ଜ୍ଞାତସାରରେ କାହାରି ପ୍ରତି ଅନ୍ୟାୟ କରିନାହିଁ। ମୁଁ ସର୍ବଦା ସତ୍ୟ ପଥରେ ରହିଛି। ତେଣୁ ଜୀବନକୁ ଯେପରି ଭାବରେ ଆଦରି ନେଇଥିଲି, ମୃତ୍ୟୁକୁ ମଧ୍ୟ ସେହିପରି ଭାବରେ ଆଦରି ନେବି। ତୁମ୍ଭକୁ ମୋର କହିବାର କଥା ହେଲା, ତୁମ୍ଭେ କଦାପି



ସତ୍ୟପଥରୁ ବିଚ୍ୟୁତ ହେବ ନାହିଁ । ଯେତେ ପ୍ରଲୋଭନ ଆସୁନା କାହିଁକି, ସତ୍ୟର ଖାତିରରେ ସେସବୁ ଏଡ଼ାଇ ଯିବ ।" ରାଜା କହିଲେ ।

ଯୁବରାଜ ନମ୍ର ଭାବରେ ଉତ୍ତର ଦେଲେ, "ପିତା ! ଆପଣଙ୍କ ଉପଦେଶ ଶିରୋଧାର୍ଯ୍ୟ କରି ମୁଁ ସେହି ଅନୁସାରେ ଜୀବନ ବିତାଇବାକୁ ଯଥାସାଧ୍ୟ ଚେଷ୍ଟା କରିବି । କିନ୍ତୁ ମୋର ବୁଦ୍ଧି ଓ ଜ୍ଞାନ ଆପଣଙ୍କ ଭଳି ପ୍ରଖର ବା ବ୍ୟାପକ ନୁହେଁ । ତେଣୁ ଜଟିଳ ସମସ୍ୟାର ସମ୍ମୁଖୀନ ହେଲେ ମୁଁ ଭୁଲ୍ କରିବି ନା ଠିକ୍ କରିବି, ସେକଥା କହି ପାରୁନାହିଁ ।"

ଯୁବରାଜଙ୍କ ଖୋଲଖୋଲି କଥାରେ ରାଜା ସନ୍ତୁଷ୍ଟ ହେଲେ ଓ କହିଲେ, "ଯେତେବେଳେ ଏଭଳି କୌଣସି ସମସ୍ୟା ଉପୁଜିବ, ଯାହାର ସମାଧାନ ତୁମ୍ଭ ନିଜ ବୁଦ୍ଧି ବଳରେ ସମ୍ଭବପର ନୁହେଁ, ସେତେବେଳେ ଗୋଟାଏ କାମ କରିବ । ଆମ ରାଜ୍ୟର ପଶ୍ଚିମ ସୀମାରେ ପର୍ବତ ଉପରେ ଧର୍ମଦେବୀଙ୍କ ମନ୍ଦିର ଅଛି । ତାହା ତୁମ୍ଭେ ଜାଣ । ଆମ ବଂଶ ପ୍ରତି ଦେବୀଙ୍କର ବହୁ ପୁରୁଷ ଧରି ଗୋଟିଏ ବର ଅଛି । ଆମ୍ଭେ ବର୍ଷକରେ ଥରେ ଯେ କୌଣସି ଗୋଟିଏ ସମସ୍ୟାର ସମାଧାନ ତାଙ୍କଠାରୁ ପାଇ ପାରିବୁଁ । ମୋ ପିତା ମୋତେ ଏ ରହସ୍ୟ ଗୋପନରେ କହିଥିଲେ । ମୁଁ ତୁମ୍ଭଙ୍କୁ କହିଲି ।"

ରାଜା କ୍ଳାନ୍ତ ହେବାର ଦେଖି ଯୁବରାଜ ଆଉ ବିଶେଷ କିଛି ପଚାରିଲେ ନାହିଁ । ସେହିଦିନ ରାତିରେ ରାଜା ଚେତା ହରାଇଲେ । ପରଦିନ ତାଙ୍କର ମୃତ୍ୟୁ ହେଲା ।

ଶ୍ରବଣାନନ୍ଦ ବହୁତ ଦୁଃଖିତ ହେଲେ । ସେହି ଦୁଃଖ ଭିତରେ ବିଧି ଅନୁସାରେ ତାଙ୍କର ଅଭିଷେକ ହେଲା ।

ଶ୍ରବଣାନନ୍ଦ ରାଜା ହେଲେ । ତାଙ୍କ ଶାସନରେ ପ୍ରଜାମାନେ ଖୁବ୍ ସନ୍ତୁଷ୍ଟ ହେଲେ । "ବାପା ଭଳି ପୁଅ !" ସମସ୍ତେ ପ୍ରଶଂସା କରି କହିଲେ ।

ହଠାତ୍ ଶ୍ରବଣାନନ୍ଦଙ୍କ ଆଗରେ ଦେଖାଦେଲା ଏକ ସମସ୍ୟା । ତାଙ୍କର ଏକମାତ୍ର କନ୍ୟା ଜଣେ ଛୋଟିଆ ସାମନ୍ତ ରାଜାଙ୍କ ପୁଅକୁ

ବିଭା ହେବାକୁ ମନ କଲେ । ପରମ୍ପରା ଅନୁସାରେ ସେ ବଂଶର ରାଜକନ୍ୟା କୌଣସି ସମକକ୍ଷ ବଂଶରେ ବିଭା ହେବା କଥା । ରାଜା ପରମ୍ପରା ଜଳାଞ୍ଜଳି ଦେବେ ନା ଝିଅର ଇଚ୍ଛାକୁ ଜଳାଞ୍ଜଳି ଦେବେ ?

ସେ ଯାଇ ପହଞ୍ଚିଲେ ଧର୍ମଦେବୀଙ୍କ ମନ୍ଦିରରେ ଓ ଧ୍ୟାନ ପ୍ରାର୍ଥନା ପୂର୍ବକ ନିଜ ସମସ୍ୟା ଉପସ୍ଥାପନ କଲେ ।

ହଠାତ୍ ପ୍ରତିମା ଉଜ୍ଜ୍ୱଳ ଦେଖାଗଲା । ନିଜ କାନ ଦେଇ ନହେଲେ ବି ରାଜା ନିଜ ଅନ୍ତର ଭିତରେ ଶୁଣି ପାରିଲେ ସ୍ପଷ୍ଟ ଗୋଟିଏ ବାକ୍ୟ : "ତମେ ଆଗେ ବାପା ନା ଆଗେ ରାଜା ?"

ବାସ୍ ! ତାଙ୍କ ମୁଣ୍ଡକୁ ସମାଧାନ ଆସିଗଲା । ସେ ଆଗେ ବାପା । ରାଜା ହେବା ବେଳକୁ କନ୍ୟାଟି ଜନ୍ମ ହୋଇ ସାରିଥିଲା । ସେ ଫେରି ଆସି ରାଜକନ୍ୟା ଚାହୁଁଥିବା ଯୁବକ ସହିତ ତାଙ୍କର ବିବାହ କରାଇଦେଲେ ।

ଏହାର ବାର୍ଷକ ପରେ ପୁଣି ଏକ ସମସ୍ୟା ଦେଖାଦେଲା । ରାଜା ଶ୍ରବଣାନନ୍ଦଙ୍କ ଏକମାତ୍ର ପୁତ୍ର ଗୁରୁକୁଳରେ ବିଦ୍ୟାଭ୍ୟାସ କରୁଥିଲେ । ଦିନେ ସେ ଜଣେ ସହପାଠୀ ସହ ଖଣ୍ଡା ଖେଳୁଥିଲେ । ଦୁହେଁ ନିଜ ନିଜ ବାମ ହାତରେ କପରି ଖଣ୍ଡା ବୁଲାଇବାକୁ ହୁଏ, ତାହା ପରୀକ୍ଷା କରୁଥିଲେ ! ହଠାତ୍ ରାଜକୁମାରଙ୍କ ହାତରୁ ଖଣ୍ଡା ଖସିଯାଇ ସହପାଠୀର ବାମ ହାତ କାଟିଦେଲା ।

ସେ ପିଲାର ବାପା ଆସି ରାଜାଙ୍କୁ କହିଲା, "ଆମ ରାଜ୍ୟର ବିଧାନ ହେଲା ଯେସାକୁ





ତେସା । ରାଜକୁମାରଙ୍କ ହାତ ମୋ ପୁଅ କାଟିବ ।"

ରାଜା ବଡ଼ ଅଡୁଆରେ ପଡ଼ିଲେ । ରାଜପୁତ୍ର ଇଚ୍ଛା କରି ତା' ସହପାଠୀ ପ୍ରତି ଅନ୍ୟାୟ କରି ନାହାନ୍ତି । ସେକଥା ସେ ପିଲର ବାପା ନବୁଝି ଜିଗର କରୁଥିବାରୁ ସେ ବଡ଼ ହତାଶ ହେଲେ ।

ରାଜା ଯାଇ ଦେବୀଙ୍କ ପାଖରେ ପହଞ୍ଚିଲେ । ତାଙ୍କ ପ୍ରାର୍ଥନାରେ ଦେବୀଙ୍କ ମୂର୍ତ୍ତି ଉଜ୍ଜ୍ୱଳ ହେଲା । ସେ ନିଜ ଅନ୍ତରରେ ଶୁଣିଲେ ଏ ବାଣୀ : "ଯେସାକୁ ତେସା ଗୋଟାଏ ବର୍ବର ନିୟମ । କାର୍ଯ୍ୟ ପଛରେ ଉଦ୍ଦେଶ୍ୟ ହେଲା ବଡ଼ କଥା । ରାଜକୁମାର ଉଦ୍ଦେଶ୍ୟ ରଖି ସହପାଠୀର ହାତ କାଟି ନାହାନ୍ତି । ସେ ନିର୍ଦ୍ଦୋଷ । ଯଦି ବାଳକର ପିତା କଠୋର ଭାବରେ ସେ ବର୍ବର ନିୟମ ପାଳିତ ହେଉ ବୋଲି ଚାହୁଁଛି, ତାକୁ କୁହ, ରାଜକୁମାର ଯେମିତ ବାମ ହାତରେ ତା' ପୁଅର ବାମ ହାତ କାଟିଛନ୍ତି, ତା' ପୁଅ ସେମିତ ନିଜ ବାମ ହାତରେ ରାଜକୁମାରଙ୍କ ବାମ ହାତ କାଟିବ ।"

ରାଜା ଆସି ତାଙ୍କ ରାୟ ଶୁଣାଇ ଦେଲେ ।

ବାସ୍, ରାଜାଙ୍କଠୁଁ ଏ ରାୟ ଶୁଣି ସେ ଆହତ ପିଲର ବାପା ଚୁପ୍‌ଚାପ୍ ଚାଲିଗଲା, କାରଣ ତା' ପୁଅ ବାମ ହାତରେ କିଛି କଲାଭଳି ଅବସ୍ଥାରେ ନଥିଲା ।

ଥରେ ରାଜା ଶ୍ରବଣାନନ୍ଦ ପଡ଼ୋଶୀ ବୈଶାଳୀ ରାଜାଙ୍କ ଅତିଥି ହୋଇଥାନ୍ତି । ବୈଶାଳୀ ରାଜା ରାତିରେ ତାଙ୍କୁ ସତରଞ୍ଜ୍ ଖେଳିବାକୁ ନିମନ୍ତ୍ରଣ କଲେ । ଖେଳ ଆରମ୍ଭ ହେବା ବେଳକୁ ବୈଶାଳୀ ରାଜା କହିଲେ, "ବନ୍ଧୁ ! ବାଜି ନ ରଖିଲେ ଖେଳ ଜମେ ନାହିଁ । ମୁଁ ମୋ ରାଜ୍ୟ ବାଜି ରଖିଲି । ତମେ କ'ଣ ରଖିବ ?"

ଗୋଟିଏ ପକ୍ଷ ଯେଉଁ ପରିମାଣ ବାଜି ରଖିବ, ଅନ୍ୟ ପକ୍ଷ ସେହି ପରିମାଣ ବାଜି ରଖିବା ବିଧି । ରାଜା ଶ୍ରବଣାନନ୍ଦ କହିଲେ, "ବେଶ୍ । ମୁଁ ବି ମୋ ରାଜ୍ୟ ବାଜି ରଖିଲି !"

ସେ ଥିଲେ ଓସ୍ତାଦ୍ ସତରଞ୍ଜ ଖେଳୁଆଡ଼୍ । ତେଣୁ ସେ ନିଶ୍ଚେ ଜିତିବେ ବୋଲି ଭାବିଥିଲେ । ତେବେ ଦୈବକ୍ରୁ ସେଦିନ ସେ ହାରିଗଲେ ।

ଦୀର୍ଘନିଃଶ୍ୱାସ ଛାଡ଼ି ସେ ବୈଶାଲୀ ରାଜାଙ୍କୁ କହିଲେ, "କୁଣ୍ଡଳ ରାଜ୍ୟ ତୁମର ହୋଇଗଲା । ଆଗାମୀ କାଲି ସକାଳେ ମୁଁ ସେକଥା ଘୋଷଣା କରିବି ।"

ବୈଶାଲୀ ରାଜା ହସି ଦେଇ କହିଲେ, "ପାଗଳ ! ମୁଁ ମୋ ରାଜ୍ୟ ସମ୍ଭାଳି ପାରୁ ନାହିଁ । ପୁଣି ତମ ରାଜ୍ୟ ନେବି କେଉଁ ଦୁଃଖରେ ?"

"ମୁଁ ଯାହା କହିଥାଏଁ, ଜୀବନ ଗଲେ ବି ସେଥିରେ ଅନ୍ୟଥା କରେ ନାହିଁ । ତେଣୁ ମୋ ରାଜ୍ୟ ତୁମର ।" ଶ୍ରବଣାନନ୍ଦ ଯୋର୍ ଦେଇ କହିଲେ । ବୈଶାଲୀ ରାଜା ରାଜ୍ୟ ନେବାକୁ ଅସ୍ୱୀକାର କରିବାରୁ ସେ ଅନନ୍ୟୋପାୟ ହୋଇ ଧର୍ମଦେବୀଙ୍କ ପାଖକୁ ଗଲେ ।

ସେଦିନ ତାଙ୍କ ପ୍ରାର୍ଥନା ସତ୍ତ୍ୱେ ଧର୍ମଦେବୀଙ୍କ ମୂର୍ତ୍ତି କାହିଁ ଉଜ୍ଜ୍ୱଳ ଦିଶିଲା ନାହିଁ । ଅନେକ ସମୟ ପରେ ସେ ନିଜ ଅନ୍ତରରେ ଶୁଣିଲେ, "ରାଜା ! ରାଜ୍ୟ ପଣ ରଖିବାକୁ ତମେ କିଏ ? ତମଠୁଁ ରାଜ୍ୟ ନେଇ ଯିବାକୁ ବୈଶାଳୀ ରାଜା ଅବା କିଏ ? ରାଜ୍ୟ ପ୍ରଜାଙ୍କର । ମନ୍ଦିର ଯାହା ଦାୟିତ୍ୱରେ ଥାଏ, ସେ ମନ୍ଦିରର ମାଲିକ କି ? ମନ୍ଦିର ଦିଅଁଙ୍କର । ସେହିପରି ରାଜ୍ୟ ତମ ହେପାଜତରେ ଅଛି । କିନ୍ତୁ ରାଜ୍ୟ ପ୍ରଜାଙ୍କର । ପଣ ରଖି ଖେଳିବା ଜୁଆ ଖେଳ । ଏହା ଗୌରବର କଥା ନୁହେଁ ।"

ରାଜା ଦେବୀଙ୍କୁ ପ୍ରଣାମ କରି ଉଆସକୁ ଚାଲି ଆସିଲେ । କିନ୍ତୁ ସେ ଜୁଆ ଖେଳି ନିଜ ରାଜପଦ ପ୍ରତି ଅସମ୍ମାନ କରିଛନ୍ତି ବୋଲି ବୁଝିପାରି ଏହାର ଅଳ୍ପଦିନ ଭିତରେ ତାଙ୍କ ପୁତ୍ର ଉପରେ ରାଜ୍ୟଭାର ଦେଇ ସନ୍ନ୍ୟାସ ନେଇ ଧର୍ମଦେବୀଙ୍କ ମନ୍ଦିର ପାଖରେହିଁ ବାକି ଜୀବନ କଟାଇଲେ ।






# ଭୟାଳୁ ବୋହୂ

ଗୋଟିଏ ଗ୍ରାମରେ ଶ୍ୟାମସିଂହ ନାମକ ଜଣେ ସଜ୍ଜନ ବ୍ୟକ୍ତି ବାସ କରୁଥିଲେ । ତାଙ୍କର ଏକମାତ୍ର ପୁତ୍ର ସୂର୍ଯ୍ୟ ସହିତ ଏକ ସୁନ୍ଦରୀ ଓ ଗୁଣବତୀ ଝିଅର ବିବାହ ଦେଲେ । ଝିଅଟିର ନାମ ସୀତା । ଯେଉଁଦିନ ସୀତା ଶଶୁର ଘରକୁ ଆସିଲା, ପ୍ରଥମେ ଶଶୁର ତାକୁ କହିଲେ, "ଦେଖ ଝିଅ, ତୋ ଶାଶୁର ସ୍ୱଭାବ ଟିକିଏ ଚିଡ଼ଚିଡ଼ା । ସେ ଯାହା କହିବ ଚୁପ୍‌ଚାପ୍ ମାନିଯିବୁ । କିଛି ଓଲଟା ଜବାବ୍ ଦେବୁନାହିଁ ।"

ସୀତା ବୋହୂ ହେବା ଦିନଠାରୁ ଘରର ସବୁ କାମଦାମ ଚୁପ୍‌ଚାପ୍ କରିଯାଏ ।

ଦିନେ ସୀତା କୂଅରୁ ପାଣି କାଢୁଥାଏ । ଶାଶୁ ଯାଇ ଦୁଆର ପାଖରେ ଠିଆ ହୋଇ କହିଲେ, "ଆରେ ବୋହୂ, ଏ ପାଣି ଗରାଏ ଆଣିବାକୁ ଯଦି ଏତେ ସମୟ ଯିବ, ତେବେ ଘରର ଅନ୍ୟାନ୍ୟ କାମ କେତେବେଳେ ହେବ ?"

ଶାଶୁଙ୍କର ଗର୍ଜନ ଓ ପାଟି ଶୁଣି ସୀତା ଭୟରେ କମ୍ପିଲା । ହାତ ଥରିବା ଯୋଗୁଁ ଗରାଟି ତଳେ ପଡ଼ିଯାଇ ଚେପା ହୋଇଗଲା । ଶାଶୁ ଆହୁରି ରାଗିଲେ । ଏସବୁ ଦେଖି ଶ୍ୟାମସିଂହ ସ୍ତ୍ରୀଙ୍କୁ କହିଲେ, "ଆସ୍ତେ କୁହ, ବୋହୂ ଭୟରେ ଥରୁଛି ।"

ଦିନେ ସମସ୍ତେ ଖାଇ ବସିଛନ୍ତି ସୀତା ଭାତ ବାଢ଼ିବା ପରେ ଘିଅ ଗିନା ଧରି ଘିଅ ଦେବାକୁ ଯାଉଛି ଶାଶୁ କହିଲେ, "ବୋହୂ, ମୁଁ କେତେଥର କହିଲିଣି ଘିଅ ଗରମ କରି ଦେବାକୁ । ତୋର ମୁଣ୍ଡରେ କିଛି ବୁଦ୍ଧି ନାହିଁ ନା କ'ଣ ?" ସୀତା ଭୟରେ ଥରିବାକୁ ଲାଗିଲା ଓ ଘିଅ ଗିନା ତଳେ ପଡ଼ିଗଲା ।

ଶ୍ରୀମତୀ ଆଶାଲତା



"ଆରେ ବୋକା କେଉଁଠିକାର, ଏତେ ପଇସା ଦେଇ ଘିଅ କିଣା ହୋଇଛି କ'ଣ ନଷ୍ଟ କରିବାକୁ? କେଉଁ ଲାଟସାହେବଙ୍କ ଝିଅ କି?" ଶାଶୁ ଗାଳି ଦେଲେ। ବୋହୂର ଏ ଅବସ୍ଥା ଦେଖି ଶ୍ୟାମସିଂହ କୌଣସି ମତେ ସ୍ତ୍ରୀଙ୍କୁ ଶାନ୍ତ କରାଇଲେ।

ଦିନେ କୂଅରୁ ସୀତା ପାଣି କାଢୁଥାଏ। ସେପଟୁ ଶାଶୁ ଗର୍ଜନ କରି କହିଲେ, "ଏ ବୋହୂ, ଚୁଲ୍ଲୀ ଉପରେ ଭାତ ବସେଇ ଦେଇ କୁଆଡ଼େ ଯାଇଛୁ? ତୋ ମୁଣ୍ଡରେ କ'ଣ ଗୋବର ଅଛି? ଏତେ ବେଖାତିର କ'ଣ? ଅକଲ ବୋଲି ଟିକିଏ ନାହିଁ?"

ଏଣେ ସୀତା ଭୟରେ ଥରିଲା। ହାତରୁ ଦଉଡି ଖସିଗଲା। କୂଅରେ ଗରା ଓ ଦଉଡ଼ି ପଡିଗଲା। ପରେ ପୁଣି ଶଶୁର ଅନ୍ୟ ଦଉଡ଼ିରେ କୂଅ କଣ୍ଟା ଦେଇ ଦଉଡ଼ି ଓ ଗରା କାଢ଼ି ଆଣିଲେ। ପରଦିନ ସୀତା ଦୁଧ ଦୁହିଁ ଘଡ଼ି ଭରି ଦୁଧ ନେଇ ଆସୁଛି ଶାଶୁ ପୁଣି ଚିତ୍କାର କରି କହିଲେ, "କେତେଥର କହିଛି ଏଇ ସମୟକୁ ଗାଈଗୁଡ଼ା ଫିଟେଇ ଦେବାକୁ। ତୁ ତ ଜମା ମୋ କଥା ଶୁଣୁନୁ!" ଶାଶୁଙ୍କ ଚିତ୍କାର ଶୁଣି ଭୟରେ ସୀତା ଥରିଲା। ସମସ୍ତ ଦୁଧ ପାତ୍ରଟି ତଳେ ପଡ଼ି ଢ଼ାଳିଗଲା।

ଘର ଭିତରୁ ଏ ଦୃଶ୍ୟ ଦେଖି ଶଶୁର ବାହାରକୁ ଆସି କହିଲେ, "ସୀତା, ତୁ ସେଦିନ ଗରା ହାତରୁ ପକାଇଦେଲୁ, ଘିଅ ଢ଼ାଳିଦେଲୁ, ପୁଣି ଗରା କୂଅରେ ପକାଇଦେଲୁ, ଆଜି ଦୁଧ ଢ଼ାଳିଦେଲୁ, ଏମିତି ହେଲେ କାମ ଚଳିବ କିପରି?"

ଶଶୁରଙ୍କ କଥା ଶୁଣି ସୀତା ଆହୁରି ଭୟରେ ଜଡ଼ସଡ଼ ହୋଇ କହିଲା, "ବାବା, ମୋତେ ଆମ ଘରେ କେହି ଗାଳି ଦିଅନ୍ତି ନାହିଁ। କିଏ ଗାଳିଦେଲେ ମୁଁ ଭୟରେ ଥରେ। ଥରିଲେ କିଛି ନା କିଛି ଗୋଳମାଳ ହୋଇଯାଏ। ମୁଁ କ'ଣ କରିବ?"

ଶ୍ୟାମସିଂହ ସ୍ତ୍ରୀଙ୍କୁ କହିଲେ, "ଦେଖ ତମେ ଆଉ ବୋହୂକୁ ଗାଳିଦେବ ନାହିଁ। ପ୍ରତିଦିନ କିଛି ନା କିଛି ଜିନିଷ ନଷ୍ଟ ହେଉଛି। ନିଜ କ୍ରୋଧକୁ ଟିକିଏ ବନ୍ଦ କରି ଦେଇ ପାରି-

ନାହିଁ ?" ସ୍ତ୍ରୀ ଏକଥା ଶୁଣି ମୁହଁ ହଲାଇ ରାଗି ସେଠାରୁ ଚାଲିଗଲେ ।

ଦିନେ କମଳାଙ୍କର ସାଙ୍ଗ ପଡ଼ୋଶୀ କାନ୍ତାଦେବୀ ତାଙ୍କ ଘରକୁ ବୁଲି ଆସିଥା'ନ୍ତି । ଦିହେଁ ବସି ଗପ କରୁଥାନ୍ତି । ମଝିରେ କମଳା ଥରେ ବୋହୂକୁ ଡାକି ପାଣି ଆଣିବାକୁ କହିଲେ । ବୋହୂ ପାଣି ନେଇ ଆସୁଛି, ଶାଶୁ ରାଗିଯାଇ କହିଲେ, "ପାଣି ଟିକିଏ ଆଣୁ ଆଣୁ ଏତେ ଡେରି ହୋଇଗଲା ?"

ବାସ୍ ବୋହୂ ଭୟରେ ଥରିଲା ଓ ପାଣି ତାଳି ତଳେ ପଡ଼ିଗଲା । କମଳା ଆହୁରି ରାଗି ଯାଇ କାନ୍ତାଙ୍କୁ କହିଲେ, "ଦେଖ ଭଉଣୀ ଏ ବୋହୂକୁ ନେଇ ମୁଁ ହତବୁଦ୍ଧି ହେଲିଣି । ବିରକ୍ତ ହୋଇଗଲିଣି । ସବୁଦିନେ କିଛି ନା କିଛି ନଷ୍ଟ କରୁଛି । ପଚାରିଲେ କହୁଛି ମୁଁ ଭୟରେ ଏପରି କରୁଛି ।"

"ହଁ ଭଉଣୀ, ସତ କଥା । କେତେକ ଝିଅ ଅତ୍ୟନ୍ତ ଅତ୍ୟନ୍ତ ଭୟାଳୁ । ଘରେ ଆଦର ପାଇ ଏପରି ହୋଇଥା'ନ୍ତି । ସେମାନଙ୍କ ଉପରେ ନ ରାଗି ଶାନ୍ତ ଭାବରେ ଆଦର କରି କହିଲେ ସେମାନେ ସୁନ୍ଦର କାମ କରନ୍ତି । କାନ୍ତାଦେବୀ କହିଲେ ।

ସେହି ଦିନଠାରୁ କମଳା ନିଜ ରାଗ ଓ ଚିଡ଼ା ପ୍ରକୃତିକୁ କିଛିଟା ବଦଳାଇବାକୁ ଚେଷ୍ଟା କଲେ ଓ ଶାନ୍ତ ଭାବରେ ବୋହୂ ସହିତ ବ୍ୟବହାର କଲେ । ଦେଖିଲେ ଫଳ ଭଲ ହେଉଛି । ବୋହୂ ଆଜିକାଲି ଆଉ କିଛି ନଷ୍ଟ କରେ ନାହିଁ । ସବୁ ସୁରୁଖୁରୁରେ ଚାଲେ । କ୍ରମେ କମଳାଙ୍କ ପ୍ରକୃତି ସଂପୂର୍ଣ୍ଣ ବଦଳି ଗଲା । ସବୁଠୁ ଖୁସି ହେଲେ ଶ୍ୱଶୁର ଶ୍ୟାମସିଂହ । ସେ କହିଲେ ଯେ ବୋହୂ ଯୋଗୁଁହିଁ ଶାଶୁଙ୍କ ସ୍ୱଭାବ ବଦଳିଲା ।

ପ୍ରକୃତରେ ବୋହୂ ଇଚ୍ଛା କରି ଏପରି ବ୍ୟବହାର କରୁଥିଲା ଶାଶୁଙ୍କ ପ୍ରକୃତି ବଦଳାଇବାକୁ ଏବଂ ସେଥିରେ ସୁଧାଂଶୁ ମଧ୍ୟ ସୀତାକୁ ସାହାଯ୍ୟ କରୁଥିଲା ।





# ଶିବ ପୁରାଣ

ଶିବପାର୍ବତୀଙ୍କର ବିବାହ ଶେଷ ହୋଇଗଲା ଓ ସେମାନେ ଯାଇ କୈଳାସରେ ରହିଲେ । ଏଣେ ତାରକାସୁରର ଅତ୍ୟାଚାରରେ ଦେବତାମାନେ ବ୍ୟସ୍ତ ହୋଇ ବ୍ରହ୍ମାଙ୍କ ପାଖକୁ ଗଲେ ଓ କହିଲେ, "ଭଗବାନ, ଆପଣ ବରଦାନ କରି ତାରକାସୁରକୁ ଏପରି ଶକ୍ତିଶାଳୀ କରିଛନ୍ତି ଯେ ତାକୁ କେହି ପରାସ୍ତ କରିପାରୁ ନାହାନ୍ତି । ଆଜି ଦିନକୁ ଦିନ ଆମ ଅବସ୍ଥା ଖରାପ ହେଉଛି । ତା'ର ଅକଥନୀୟ ଅତ୍ୟାଚାର ବଢ଼ି ଚାଲିଛି । ଏ କଷ୍ଟରୁ ଆମକୁ ଉଦ୍ଧାର କରନ୍ତୁ ।"

ବ୍ରହ୍ମା କହିଲେ, "ଦେବଗଣ, ଏକଥା ସତ୍ୟ ଯେ ମୁଁ ବରଦାନ କରିଛି । କିନ୍ତୁ ନକରି ରହିପାରୁ ନଥା'ନ୍ତି ଦୁର୍ଜନ ହେଉ ବା ସଜ୍ଜନ ହେଉ ଘୋର ତପସ୍ୟା କଲେ ତପସ୍ୟାର ଫଳ ମୋତେ ଦେବାକୁ ହେବ । ନ ଦେଲେ ତପସ୍ୟାରୁ ଉତ୍ଥିତ ଅଗ୍ନିରେ ସାରା ଜଗତ ଜଳି ଭସ୍ମ ହୋଇଯିବ । ତେଣୁ ଲୋକ ସମୂହଙ୍କୁ ରକ୍ଷା କରିବା ପାଇଁ ମୋତେ ବର ଦେବାକୁ ପଡ଼େ । ସେ ଶିବଙ୍କୁ ମଧ୍ୟ ସନ୍ତୁଷ୍ଟ କରି ବରଲାଭ କରିଛି । ଶିବ ତ ଆଶୁତୋଷ! ନ ବୁଝି ନ ବିଚାରି ବର ଦେଇ ଦିଅନ୍ତି । ପରେ ସେମାନେ ବର ଦ୍ୱାରା ଶକ୍ତିଶାଳୀ ହୋଇ କାହାକୁ ଖାତିର କରନ୍ତି ନାହିଁ । ଦେବତା, ମାନବ ଅସୁର ସମସ୍ତଙ୍କୁ ଏକା ଆଖିରେ ଦେଖନ୍ତି ଓ ନାନା ଅତ୍ୟାଚାର ଉପଦ୍ରବ କରନ୍ତି । ଏବେ ଚାଲ ସମସ୍ତେ ମିଳି ବିଷ୍ଣୁଙ୍କ ପାଖକୁ ଯାଇ ଏହାର ପ୍ରତିକାର

୭. କୁମାରସମ୍ଭବ

ନିବେଦନ କରିବା । ସେ ଯାହା କହିବେ ତାହାହିଁ କରାଯିବ ।"

ବ୍ରହ୍ମାଙ୍କ ସହିତ ସମସ୍ତ ଦେବତା ବିଷ୍ଣୁଙ୍କ ପାଖକୁ ଯାଇ ତାରକାସୁରର ଅତ୍ୟାଚାର ବିଷୟ କହିଲେ ଓ ସେ କଷ୍ଟରୁ ତ୍ରାଣ କରିବା ପାଇଁ ବିଷ୍ଣୁଙ୍କୁ ନିବେଦନ କଲେ ।

ବିଷ୍ଣୁ କହିଲେ, "ତାରକାସୁରର ଅତ୍ୟାଚାର ବିଷୟରେ ମୁଁ ସବୁ ଶୁଣିଛି । ତା'ର ଶେଷ ସମୟ ଉପସ୍ଥିତ ହେଲଣି । କିନ୍ତୁ ଯେଉଁ ବର ସେ ଲାଭ କରିଛି ସେହି ବର ଅନୁସାରେ ମୁଁ ତାକୁ ମାରିପାରିବି ନାହିଁ । କେବଳ ଶିବ-ପାର୍ବତୀଙ୍କ ପୁତ୍ର ତାକୁ ମାରି ପାରିବେ, ଏବେ ଆମକୁ ଆଉ କିଛି ସମୟ ଅପେକ୍ଷା କରିବାକୁ ହେବ ।"

ବିଷ୍ଣୁଙ୍କ ପାଖରୁ ସମସ୍ୟା ସମାଧାନର ଏ ସୂତ୍ର ବିଷୟ ଶୁଣି ଦେବତାମାନେ ନୀରବ ରହିଲେ ଓ ଦୀର୍ଘନିଃଶ୍ୱାସ ତ୍ୟାଗ କଲେ । ସେମାନେ ଧରିନେଲେ ଯେ ସେ ପ୍ରବଳ ତାରକାସୁର କବଳରୁ ସେମାନଙ୍କୁ ଆଉ କେହି ରକ୍ଷା କରିପାରିବେ ନାହିଁ । ଶିବଙ୍କର ପୁତ୍ର ହେବ ଓ ସେ ବଡ଼ ହୋଇ ଅସୁର ନିଧନ କରିବ, ଏଭଳି ସମ୍ଭାବନା ସୁଦୂର ପରାହତ ବୋଲି ସେମାନେ ଧରି ନେଲେ ।

"କ'ଣ ହେଲା? ତମେମାନେ ହତାଶ ଦିଶୁଛ କାହିଁକି?" ବିଷ୍ଣୁ ପଚାରିଲେ ।

ଦେବତାମାନେ କହିଲେ, "ଭଗବାନ୍, ଶିବ ପାର୍ବତୀଙ୍କର ବିବାହ ତ ଶୀଘ୍ର କରିବାକୁ ଯାଇ କାମଦେବ ଭସ୍ମ ହେଲା । ସେଇ



ଏକମାତ୍ର ଉଦ୍ଦେଶ୍ୟ ଶୀଘ୍ର ସେମାନଙ୍କର ସନ୍ତାନ ଜନ୍ମ ହେଲେ ଦେବତାଙ୍କର କଷ୍ଟ ଶେଷ ହେବ । କାହିଁ ଏପର୍ଯ୍ୟନ୍ତ ତ କୌଣସି ସନ୍ତାନ ଜନ୍ମ ହେଲା ନାହିଁ । ତେଣୁ ଆପଣମାନେ ତାଙ୍କୁ ଏ ବିଷୟରେ ସଚେତନ କରାନ୍ତୁ । ସେ ତ ଭୋଳା-ମହେଶ, ତାଙ୍କର କ'ଣ କିଛି ମନେ ଥାଏ ?"

ବ୍ରହ୍ମା ଓ ଦେବତାମାନଙ୍କୁ ଧରି ବିଷ୍ଣୁ କୈଳାସରେ ପହଞ୍ଚିଲେ । ସେଠାରେ ସେମାନେ ଯାଇ ଦେଖିଲେ କୈଳାସରେ ଏକ ନିଭୃତ ପ୍ରଦେଶରେ ଶିବ ଓ ପାର୍ବତୀ ଅଛନ୍ତି । ପର୍ବତର ଚତୁର୍ଦ୍ଦିଗରେ ଶିବଗଣମାନେ ପହରା ଦେଉଛନ୍ତି । ଶିବଙ୍କ ପ୍ରଧାନ ସହଚର ନନ୍ଦୀଶ୍ୱର କହିଲେ, "ଏବେ ଭିତରକୁ କାହାରିକୁ ଛାଡ଼ିବାକୁ ଆଦେଶ ନାହିଁ ।"

ବିଷ୍ଣୁ ଅନନ୍ୟୋପାୟ ହୋଇ ଦେବତା-ଗଣଙ୍କୁ କହିଲେ, "ଦେଖ, ଏପରି ଅବସ୍ଥାରେ ତମେମାନେ ଏଠାରେ ଗୋଟିଏ ମୃଣ୍ମୟ ଶିବଲିଙ୍ଗ ସ୍ଥାପନ କରି ପୂଜା କର ଓ ପଞ୍ଚାକ୍ଷର ନାମ ଜପ କରି ଶିବଙ୍କୁ ଆବାହନ କର ।" ଦେବତାମାନେ ବିଷ୍ଣୁଙ୍କ କଥା ଅନୁସାରେ କାର୍ଯ୍ୟ କଲେ । ତା'ପରେ ଶିବ ପଞ୍ଚାକ୍ଷରୀ ମନ୍ତ୍ର 'ନମଃ ଶିବାୟ' ଜପ କରି ଶିବଙ୍କୁ ଆବାହନ କଲେ । କିଛି ସମୟ ପରେ ଶିବ ଦେବତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଓ କହିଲେ, "କୁହନ୍ତୁ, ମୁଁ ଆପଣମାନଙ୍କର କ'ଣ କରିପାରେ ।"

ବ୍ରହ୍ମା, ବିଷ୍ଣୁ ଓ ଦେବଗଣ କହିଲେ, "ତାରକାସୁରର ଅତ୍ୟାଚାରରେ ସମସ୍ତେ





ଅତିଷ୍ଠ ହୋଇ ପଡ଼ିଛନ୍ତି । ଋଷିମୁନିମାନଙ୍କର ଯାଗ ଯଜ୍ଞରେ ସେ ଘୋର ବିଘ୍ନ ଘଟାଉଛି । ସଂସାରରେ ଧର୍ମ ବୋଲି ଆଉ କିଛି ନାହିଁ । ତା' ଉପରେ ଋଷିମୁନିମାନେ ମଧ୍ୟ କିଛି କରିପାରୁ ନାହାନ୍ତି । ଏପରି ବିଧି ନିର୍ଦ୍ଦିଷ୍ଟ ଅଛି କି ଆପଣଙ୍କ ଅଂଶ ଜାତ ପୁତ୍ରହିଁ ତାକୁ ବିନାଶ କରିବ, ତେଣୁ ଏ ବିଷୟରେ ଆପଣ କିଛି ଉପାୟ କରନ୍ତୁ ।"

ଶିବ ନୀରବ ରହିଲେ ଓ କିଛି ସମୟ ଭିତରେ ଧ୍ୟାନସ୍ଥ ହେଲେ । ତାଙ୍କୁ ସେ ଅବସ୍ଥାରେ ଦେଖି ଦେବତାମାନେ ପୁନର୍ବାର ତାଙ୍କ ସ୍ତୁତ କରିବାକୁ ଲାଗିଲେ । ଶିବ ଯେ ସେମାନଙ୍କ ଅବେଦନ ଶୁଣି ତୁଷ୍ଟ ହୋଇ ନାହାନ୍ତି, ଏହାକୁ ସେମାନେ ସୌଭାଗ୍ୟ ବୋଲି ମନେ କଲେ । ବର୍ତ୍ତମାନ ଶିବ ତୁଷ୍ଟ ହୋଇ ସେମାନଙ୍କ ପ୍ରାର୍ଥନା ପୂରଣ କଲେ ହେଲା ।

"ମହାଦେବ! ଆପଣ ଅନୁଗ୍ରହ କରି ଆମ ପ୍ରାର୍ଥନା ପୂରଣ କରନ୍ତୁ । ତାରକାସୁର କବଳରୁ ପୃଥିବୀ ଓ ସ୍ୱର୍ଗପୁରୀ ରକ୍ଷା ପାଉ । ଆଉ ସହ୍ୟ କରି ହେଉ ନାହିଁ ।" ଶିବ ଆଖି ଖୋଲିବାରୁ ଦେବତାମାନେ ନମ୍ର ଭାବରେ କହିଲେ ।

ଦେବତାମାନଙ୍କ କଥା ଶୁଣି ସେ ଏହାର ତୁରନ୍ତ ପ୍ରତିକାର କରିବେ ବୋଲି ସଂକଳ୍ପ କରି ଅନ୍ତର୍ଦ୍ଧାନ ହେଲେ । ଦେବତାମାନେ ଓ ବ୍ରହ୍ମା, ବିଷ୍ଣୁ ନିଜ ନିଜ ସ୍ଥାନକୁ ଫେରିଗଲେ । ଏହି ଘଟଣାର କିଛି ଦିନ ପରେ ଶିବଙ୍କ ଶକ୍ତିରୁ ଉତ୍ପନ୍ନ ହେଲେ ଏକ ଦିବ୍ୟ କୁମାର । ସେଦିନ ଥିଲା ମାର୍ଗଶୀର ଷଷ୍ଠୀ, ନକ୍ଷତ୍ର ଥିଲା ଧନିଷ୍ଠା ଲଗ୍ନ ବୃଶ୍ଚିକ ।

ବାଳକଟି ସୃଷ୍ଟି ହେବା ମାତ୍ରେ ତାକୁ ଧାରଣ କରିବାକୁ ବାୟୁଦେବ ଦେଖିଲେ ଗଙ୍ଗା ଏକମାତ୍ର ଯୋଗ୍ୟ । ତେଣୁ ଗଙ୍ଗା କୂଳରେ ଶରବଣରେ ନେଇ ତାଙ୍କୁ ବାୟୁଦେବ ଛାଡ଼ି ଦେଲେ । ଛୋଟ ସୁନ୍ଦର ଶିଶୁଟିଏ ଜନ୍ମ ହୋଇ କାନ୍ଦୁଛି । ଗଙ୍ଗାମାତାଙ୍କ କୂଳରେ ଥିଲେ ମଧ୍ୟ ପାର୍ଥିବ ରୂପ ନେଇ ସେ ପିଲାର ଯତ୍ନ ନେଇ ପାରୁ ନାହାନ୍ତି, ଠିକ୍ ସେତିକବେଳେ ସ୍ୱର୍ଗରୁ



ଗଙ୍ଗାକୁ ସ୍ନାନ କରିବାକୁ ଆସିଥିଲେ କୃତ୍ତିକା ନକ୍ଷତ୍ରଗଣ । ସେମାନେ ଦେବକନ୍ୟା ଓ ସଂଖ୍ୟାରେ ଛଅଜଣ । ଏଡ଼େ ସୁନ୍ଦର ଶିଶୁଟିଏ ପାଇ ସେମାନଙ୍କ ମଧ୍ୟରେ ଦିବ୍ୟ ବାତ୍ସଲ୍ୟର ଭାବ ଉଦ୍‌ବେଳିତ ହେଲା । ଛଅଜଣଯାକ ଦେବକନ୍ୟା ପିଲାଟିକୁ କୋଳକୁ ନେଇ ଧରିଲେ । ସେଥିପାଇଁ ନବଜାତ ଶିଶୁ କୁମାର ଦୁଗ୍‌ଧପାନ କରିବାକୁ ବ୍ୟସ୍ତ ହୋଇ ଛଅଜଣ କୃତ୍ତିକାଙ୍କଠାରୁ ଏକ ସମୟରେ ଦୁଗ୍‌ଧପାନ କରିବାକୁ ଯାଇ ଛଅଟି ମୁହଁ ଧାରଣ କଲେ । ସେଥିପାଇଁ ତାଙ୍କ ନାମ ହେଲା ଷଣ୍ମୁଖ, ବା ଷଡ଼ାନନ । କୃତ୍ତିକାମାନଙ୍କ ଦ୍ୱାରା ପାଳିତ ହୋଇଥିବାରୁ ତାଙ୍କ ନାମ ହେଲା କାର୍ତ୍ତିକେୟ । ଏତଦ୍‌ବ୍ୟତୀତ ତାଙ୍କର କୁମାରସ୍ୱାମୀ, ସ୍କନ୍ଦ ପ୍ରଭୃତି ଅନ୍ୟ ଅନେକ ନାମ ଅଛି ।

କୁମାର ଅତ୍ୟନ୍ତ ସୁକୁମାର ଓ ସୁନ୍ଦର ତରୁଣରେ ପରିଣତ ହେଲେ । ତାଙ୍କ ରୂପ ଓ ବ୍ୟକ୍ତିତ୍ୱ ଦେଖି ଖାଲି ଜୀବନ୍ତ ପ୍ରାଣୀମାନେ ନୁହେଁ, ପ୍ରକୃତି ମଧ୍ୟ ପୁଲକିତ ହେଲା ଭଳି ମନେ ହେଲା । ସେ ମଧ୍ୟେ ମଧ୍ୟେ ହସୁଥାନ୍ତି ଓ ତାଙ୍କର ସେ ହସ ଯିଏ ଅବଲୋକନ କରୁଥାଏ, ସେ ଆନନ୍ଦରେ ଆତ୍ମହରା ହେଉଥାଏ । ଦେବଦେବୀ, ଗନ୍ଧର୍ବ, କିନ୍ନର ଓ ଅନ୍ୟ ଅତି-ଭୌତିକ ଶକ୍ତିମାନେ ତାଙ୍କୁ ଆସି ଦର୍ଶନ କରି ଯାଉଥାନ୍ତି ।

ଦିନେ ସେ ଗଙ୍ଗାକୂଳରେ ଖେଳୁଥିବା ବେଳେ ଆକାଶରୁ ଶିବ ପାର୍ବତୀ ତାଙ୍କୁ ବହୁତ ଦୂରରୁ ଦେଖି ସେଠାରେ ଓହ୍ଲାଇଲେ ଓ ଗଙ୍ଗାମାତା ଓ କୃତ୍ତିକାମାନଙ୍କୁ ବହୁତ ବୁଝାଇ ଶିଶୁକୁ ଧରି କୈଳାସ ଗମନ କଲେ । ସେଠାରେ ଖୁବ୍ କମ୍ ସମୟ ମଧ୍ୟରେ ଶିବଙ୍କଠାରୁ ସେ ସମସ୍ତ ପ୍ରକାର ଧନୁର୍ବିଦ୍ୟା ଓ ଅସ୍ତ୍ରଶସ୍ତ୍ର ଚାଳନା ଶିକ୍ଷା କରି ଅଦ୍ୱିତୀୟ ହୋଇ ଉଠିଲେ । ତା'ପରେ ଦେବତାମାନେ ତାଙ୍କୁ ସେନାପତି ପଦରେ ଅଭିଷିକ୍ତ କରାଇଲେ ।

ପାର୍ବତୀ କହିଲେ, "ବତ୍ସ, ଏବେ ତମେ ଦେବତାମାନଙ୍କର ସେନାପତି ପଦରେ



ଅଭିଷିକ୍ତ ହୋଇଛ। ଯାଅ ଅସୁର ଓ ରାକ୍ଷସମାନଙ୍କ ଅତ୍ୟାଚାରରୁ ସେମାନଙ୍କୁ ରକ୍ଷା କର। ଦୁଷ୍ଟ ଓ ପାପୀମାନଙ୍କୁ ସଂହାର କର। ଆମର ଆଶିର୍ବାଦ ଓ ରକ୍ଷାକାରୀ ଶକ୍ତି ତୁମ ସହିତ ରହିଥିବ।"

ତା'ପରେ ପାର୍ବତୀ ଓ ଶିବ ନିଜ ନିଜର ଶକ୍ତି ଓ ଅସ୍ତ୍ର ଶସ୍ତ୍ର କୁମାରଙ୍କୁ ଦେଲେ। ତା'ପରେ ଦେବତାମାନେ ମଧ୍ୟ ତାଙ୍କର ଶକ୍ତି ସବୁ କୁମାରଙ୍କୁ ଦେଲେ। ମହାନ୍ ଶକ୍ତିଶାଳୀ ଦେବସେନାପତି କୁମାର ଦେବସୈନ୍ୟଗଣଙ୍କୁ ନେଇ ଯୁଦ୍ଧ ଯାତ୍ରା କଲେ। ସେଥିପାଇଁ ଦେବଗୁରୁ ବୃହସ୍ପତି ଆଗରୁ ଶୁଭ ସମୟ ନିର୍ଘଣ୍ଟ କରିଥିଲେ।

ଏଣେ ତାରକାସୁର ଶିବଙ୍କୁ ମନ୍ଦିରରେ ଖୁବ୍ ପୂଜା ଅର୍ଚ୍ଚନା କରି ପ୍ରାର୍ଥନା କଲା, "ହେ ପ୍ରଭୋ, ମୋର ଯେପରି ସବୁଥିରେ ଜୟ ହେଉ।" ପୁଣି ପୂଜା ସମାପ୍ତ କରି ମିଳିତ ଦେବତାଙ୍କର ଯୁଦ୍ଧ ଯାତ୍ରା ବିଷୟରେ ଶୁଣିଲା ତତ୍‌କ୍ଷଣାତ୍ ନିଜର ସେନାପତିଙ୍କୁ ଡକାଇ ସୈନ୍ୟସଜ୍ଜା କରିବାକୁ ଆଦେଶ ଦେଲା।

ଇତିମଧ୍ୟରେ କୁମାର ଦେବସୈନ୍ୟଙ୍କ ସହ ଆସି ତାରକାସୁର ରାଜ୍ୟର ବାହାରେ ଛାଉଣୀ ପକାଇ ରହିଲେ। ସେଠାରେ କୁମାର ଦେବତାମାନଙ୍କୁ କହିଲେ, "ଦେବଗଣ, ହଠାତ୍ ଆମ ପଛରୁ ଯାଇ ଆକ୍ରମଣ କରିବା ଅସୁନ୍ଦର କାର୍ଯ୍ୟ ହେବ। ତେଣୁ ପ୍ରଥମେ ସନ୍ଧି କରିବାର କିଛି ସର୍ତ୍ତ ଦେଇ ଦୂତ ପଠାଇବା। ସେ ନ ମାନିଲେ ଯୁଦ୍ଧ କରିବା। ଆପଣମାନଙ୍କର ଇଚ୍ଛା କ'ଣ?" ଦେବଗଣ କୁମାରଙ୍କ କଥାରେ ସ୍ୱୀକୃତି ପ୍ରଦାନ କଲେ। ତା'ପରେ ଦୂତକୁ ତାରକାସୁର ନିକଟକୁ ପଠାଗଲା।

ଦୂତକୁ ଦେଖି ତାରକ କହିଲା, "ତମେ କିଏ; ଏଠାକୁ କାହିଁକି ବା ଆସିଛ?" ଦୂତ କହିଲା, "ରାଜନ୍, ସମସ୍ତେ ଜାଣନ୍ତି ଯେ ଆପଣ ଶିବଭକ୍ତ। ଶିବପୁତ୍ର କୁମାର ମୋତେ ଦୂତ କରି ଆପଣଙ୍କ ପାଖକୁ ପଠାଇଛନ୍ତି।"

ତାରକ ଖୁସି ହୋଇ ଦୂତକୁ ଆସନ ଦେଇ କହିଲା, "ଦେବତାମାନେ ସିନା ମୋର ଶତ୍ରୁ, କୁମାର ତ ମୋର ଶତ୍ରୁ ନୁହନ୍ତି । କୁହ ତମେ କ ବାର୍ତ୍ତା କୁମାରଙ୍କଠାରୁ ଆଣିଛ ?"

ଦୂତ କହିଲା, "କୁମାର କହିଛନ୍ତି ତମେ ବହୁତ ଦିନ ଧରି ତିନିଲୋକଙ୍କୁ ଶାସନ କରୁଛ । କିନ୍ତୁ ଶାସନ ନାମରେ ଅନେକ ସାଧୁ ଓ ଦେବତାମାନଙ୍କ ଉପରେ ଅତ୍ୟାଚାର କରୁଛ । ତେଣୁ ଧର୍ମକାର୍ଯ୍ୟରେ ବହୁ ବିଘ୍ନ ଘଟୁଛି । ଏବେ ତମେ ଇନ୍ଦ୍ରଙ୍କୁ ଇନ୍ଦ୍ରପଦ ଫେରାଇ ଦିଅ ଓ ଶାନ୍ତିରେ ରାଜ୍ୟ ଶାସନ କର । ନଚେତ୍ ଯୁଦ୍ଧ ନିଶ୍ଚୟ ଅନିବାର୍ଯ୍ୟ ।"

ଯୁଦ୍ଧ ନାମ ଶୁଣି ତାରକ ରାଗରେ ଥରି ଉଠିଲା । ସେ କହିଲା, "ଯାଅ ତୁମର ସେନାପତି କୁମାରଙ୍କୁ କହିଦିଅ ଆମେ ମଧ୍ୟ ଯୁଦ୍ଧ ପାଇଁ ପ୍ରସ୍ତୁତ । କାଲି ଯୁଦ୍ଧ କ୍ଷେତ୍ରରେ ତାଙ୍କ ପ୍ରଶ୍ନର ଉତ୍ତର ସେ ପାଇ ପାରିବେ । ଏବେ ମୁଁ କିଛି କହୁନାହିଁ ।"

ପରଦିନ ସୂର୍ଯ୍ୟୋଦୟ ପରଠାରୁ ଦୁଇ ପକ୍ଷର ସୈନ୍ୟଦଳ ଖୁବ୍ ଜୋର୍‌ରେ ଯୁଦ୍ଧ ଆରମ୍ଭ କଲେ । ଉଭୟ ପକ୍ଷରେ ବଡ଼ ବଡ଼ ଯୋଦ୍ଧା ବୀରମାନେ ଥା'ନ୍ତି । କେତେ-ଦିନ ଧରି ଯୁଦ୍ଧ ଚାଲିଲା । ତାରକାସୁରର ହାରିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ଏଣେ ଦେବତାମାନେ କ୍ରମେ ଶକ୍ତିହୀନ ହୋଇ ପଡ଼ିଲେ । ଏପରି ଅବସ୍ଥା ଦେଖି କୁମାର ବିଚଳିତ ହୋଇ ପଡିଲେ । ତେଣୁ ସେ ଆଉ ଦ୍ୱିଧା ନ କରି ଶେଷ ଅସ୍ତ୍ର ପ୍ରୟୋଗ କଲେ । ତାହା ଥିଲା ଶିବଙ୍କର ଭୟଙ୍କର ପାଶୁପତ ଅସ୍ତ୍ର । ଯେପରି ଆକାଶରୁ ଏକ ସଙ୍ଗରେ ଲକ୍ଷ ଲକ୍ଷ ବିଜୁଳି ଓ ବଜ୍ରପାତ ହେଲା । ଅସୁରମାନେ ସେଥିରେ ସମ୍ପୂର୍ଣ୍ଣ ଭସ୍ମ ହୋଇଗଲେ । ଦେବତାମାନଙ୍କର ଜୟ ହେଲା ।





# ଉପକାର

ବାସୋର ନଗରରେ ଅଜିଜ୍ ନାମକ ଜଣେ ଯୁବକ ଧନୀ ବ୍ୟବସାୟୀ ଥିଲା । ସାଧୁ ପ୍ରକୃତ ଓ ଦୟାଶୀଳତା ଯୋଗୁ ସେ ସୁଖ୍ୟାତ ଅର୍ଜନ କରିଥିଲା । ତା'ର ପଡ଼ୋଶୀ ସୈୟଦ ତା'ର ଜନପ୍ରିୟତାରେ ଇର୍ଷାଳୁ ହୋଇ ଚିନ୍ତାଗ୍ରସ୍ତ ହେଲା । ଶେଷରେ ଅତ୍ୟଧିକ ଚିନ୍ତା ଯୋଗୁ ପାନାହାର ତ୍ୟାଗ କରି ଶଯ୍ୟାଶାୟୀ ହେଲା ।

ଦିନେ ସୈୟଦର ସ୍ତ୍ରୀ ଅଜିଜ୍ ଘରକୁ ଆସି କହିଲା, "ଭାଇଜାନ୍ , ମୋ ସ୍ୱାମୀ ଆପଣଙ୍କ ଧନ ଦୌଲତ ଦେଖି ଓ ଆପଣଙ୍କ ନାମ ଯଶ ଶୁଣି, ନିଜର ସେପରି ନଥିବାରୁ ଦୁଃଖରେ ଶଯ୍ୟାଶାୟୀ ହୋଇ ପଡ଼ିଛନ୍ତି । ଏବେ ସେ ଉଠାବସା ପର୍ଯ୍ୟନ୍ତ କରିପାରୁ ନାହାନ୍ତି ।"

ସୈୟଦର ସ୍ତ୍ରୀ ସମ୍ପର୍କରେ ଅଜିଜ୍‌ର ଭଉଣୀ; ତେଣୁ ଅଜିଜ୍ ତାକୁ ବୁଝାଇ କହିଲା, "ସଲମା, ତୁ ଚିନ୍ତା କରନା । ତୋର ସ୍ୱାମୀ ସୁସ୍ଥ ହୋଇଯିବାର ଉପାୟ ମୁଁ କରିବି ।"

ନିଜର ଧନସମ୍ପତ୍ତି ଯୋଗୁ ଜଣେ ପଡ଼ୋଶୀ ଏପରି କଷ୍ଟ ପାଉଛି ଭାବି ଅଜିଜ୍ ବଡ଼ ବ୍ୟସ୍ତ ହେଲା । ଯେଉଁ ସମ୍ପତ୍ତି ଜଣକୁ ଏତେ ଦୁଃଖ ଦେଉଛି ସେ ସମ୍ପତ୍ତି ଥାଇ କେତେ ନ ଥାଇ କେତେ ? ଏଇକଥା ଭାବି ଜଣେ କର୍ମଚାରୀ ଜିମ୍ମାରେ ସବୁ ସମ୍ପତ୍ତି ଦେଇ ନିଜେ ଘର ଛାଡ଼ି ଚାଲିଗଲା ।

ଯୁଆଡ଼େ ଆଖି ପାଇଲା ସେ ଚାଲିଲା । ଚାଲି ଚାଲି ସନ୍ଧ୍ୟା ବେଳକୁ ଗୋଟିଏ କୂଅ ପାଖରେ ପହଞ୍ଚିଲା । ଚାରିପାଖରେ ସୁନ୍ଦର କଅଁଳ ଘାସ ହୋଇଛି ଓ ଟଉଟର ଅଛି । ସେ ବହୁତ ଥକା ହୋଇ ଯାଇଥିବାରୁ ବସୁ ବସୁ ସେଇଠି ଶୋଇ ପଡ଼ିଲା ।



ପରଦିନ ସକାଳେ ସେଇ ରାସ୍ତାରେ କେତେକ ସୌଦାଗର ଯାଉଥିଲେ, ସେମାନେ ଅଜିଜ୍‌କୁ ଦେଖି ଚିହ୍ନି ପକାଇଲେ ଓ ତାକୁ ଉଠାଇ କିଛି ଖାଇବାକୁ ଦେଇ ପଚାରିଲେ, "ତମେ ଏଠାକୁ କିପରି ଏତେ ସକାଳେ ଆସିଲ ?"

"ମୋର ସମ୍ପତ୍ତି ଯୋଗୁ ମୁଁ ବହୁ ସମସ୍ୟାର ସମ୍ମୁଖୀନ ହୋଇଛି । ଆଉ ଧନ ଅର୍ଜନ କରିବି ନାହିଁ ।" ଅଜିଜ୍ କହିଲା ।

ସେମାନେ ଅଜିଜ୍‌ର ସରଳ ପ୍ରକୃତି ବିଷୟରେ ଆଗରୁ ଜାଣିଥିଲେ । ତା' ପ୍ରତି ସମସ୍ତଙ୍କର ସ୍ୱତଃ ଶ୍ରଦ୍ଧା ଥାଏ । ତେଣୁ ସେମାନେ କିଛି ଖାଦ୍ୟ ଓ କିଛି ଧନ ଓ ଦେଖାଶୁଣା କରିବାକୁ ଦୁଇଟି ଗୃହକର ଅଜିଜ୍ ପାଖରେ ରଖି ନିଜ ରାସ୍ତାରେ ଗଲେ । ପୁଣି ଯିବା ବାଟରେ ସେମାନେ ପ୍ରଚାର କରିଗଲେ କି ଅମୁକ କୂଅ ପାଖରେ ଜଣେ ମହାତ୍ମା ବାସ କରୁଛନ୍ତି ।

ଏସବୁ ଶୁଣି ପାଖ ଗାଁର ଲୋକେ ଅଜିଜ୍ ପାଖକୁ ଦୌଡ଼ିବା ଆରମ୍ଭ କଲେ । ତା'ପାଇଁ ଘରଟିଏ ବନାଇ ଦେଲେ । ତା' ପାଖକୁ ଆସୁଥିବା ଲୋକଙ୍କର ଅନେକ ସମସ୍ୟା ସେ ବୁଝାଇ ସମାଧାନ କରିଦିଏ ଓ ଧର୍ମ ଉପଦେଶ ଦିଏ । କ୍ରମେ ଅଧିକ ଲୋକ ସେଠାକୁ ଆସିଲେ ଓ ଅଜିଜ୍‌ର ଗୁଣ ଓ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ତା'ର ଯଶୋଗାନ କରିବାକୁ ଲାଗିଲେ ।

ଅଜିଜ୍ ଘରଛାଡ଼ି ଚାଲିଯିବା କଥା ଶୁଣି ସୈୟଦ ଖୁସି ହୋଇଗଲା ଓ କ୍ରମେ ସୁସ୍ଥ ହେଲା । କିନ୍ତୁ ସେ ଖୁସି ତା'ର ସରିଗଲା ଯେବେ ସେ ଶୁଣିଲା କି ଅଜିଜ୍ ନୂତନ ସ୍ଥାନରେ ଅଧିକ ସୁନାମ ଅର୍ଜନ କଲାଣି । ପୁଣି ସେ ଦୁଃଖ ଓ ଈର୍ଷ୍ୟାରେ ଭାଙ୍ଗି ପଡ଼ିଲା ।

ଦିନେ ଅଜିଜ୍ ଶିଷ୍ୟମାନଙ୍କ ସହିତ ଧର୍ମଚର୍ଚ୍ଚା କରୁଥାଏ; ଦେଖିଲା ସୈୟଦ ଆସି ପହଞ୍ଚିଛି । ସୈୟଦ କହିଲା, "ଭାଇଜାନ୍, ଆପଣଙ୍କ ସହିତ ମୋର କିଛି ଗୁପ୍ତରେ କଥାବାର୍ତ୍ତା ହେବାର ଅଛି । ପୂର୍ବକଥା ଭୁଲିଯା'ନ୍ତୁ, ଚାଲନ୍ତୁ ସେଇ ଗଛ ପାଖକୁ ସେଇଠି କହିବି ।"



ତା'ପରେ ଦୁହେଁ କଥା କହି ଚାଲି ଚାଲି ଯାଇ ସେହି ଗଛ ଓ ଏକ ବାମ୍ପୀ ନିକଟରେ ପହଞ୍ଚିଲେ । ସରଳ ଅଜିଜ୍ କୌତୁହଳୀ ହୋଇ ବାମ୍ପୀକୁ ଦେଖିବା ମାତ୍ରେ ସୈୟଦ ତାକୁ ଜୋର୍ କରି ଠେଲି ବାମ୍ପୀରେ ପକାଇ ଦେଇ ଚାଲିଗଲା ।

ଅଜିଜ୍ ପହଁରି ଶିଖି ନଥିଲା । ସେ ହାତ ଗୋଡ଼ ହଲଉଥାଏ । ସେହି ସମୟରେ ବାମ୍ପୀର ଥିବା ଜଳଦେବୀମାନେ ତାକୁ ଦେଖିଲେ । ସେମାନେ ଆଗରୁ ଅଜିଜର ସାଧୁ ସ୍ୱଭାବ ବିଷୟରେ ଜାଣିଥିଲେ । ତେଣୁ ସେମାନେ ତାକୁ ଉଠାଇ ଉପରେ ବସାଇ ଦେଇ କହିଲେ, "ତୁମକୁ ଦେଖି ଆମେମାନେ ଖୁବ୍ ଖୁସି । ତୁମରି ପାଇଁ କାଲି ସୁଲ୍‌ତାନ୍ ଏହି ଅଞ୍ଚଳକୁ ଆସୁଛନ୍ତି ।"

"ମୋ ପାଇଁ ? କାହିଁକି ?" ଅଜିଜ୍ ପ୍ରଶ୍ନ କଲା ।

"ତେବେ ଶୁଣ । ସୁଲତାନ୍‌ଙ୍କର ଏକମାତ୍ର ଝିଅକୁ ଭୂତ ଲାଗିଛି । ଯେତେ ଚେଷ୍ଟା କଲେ ମଧ୍ୟ ସେ ଯାଉ ନାହିଁ । କେହି କେହି ତୁମ ନାମ କହିବାରୁ ତୁମ ସହିତ ଦେଖା କରିବାକୁ ସେ ଆସୁଛନ୍ତି ।" ଜଳଦେବୀମାନେ କହିଲେ ।

"ଓହୋ ଏପରି କଥା ? କିନ୍ତୁ ମୁଁ କ'ଣ ବା କରିପାରିବି ?" ଅଜିଜ୍ କହିଲା ।

ଜଳଦେବୀମାନେ କହିଲେ, "ଉପାୟ ଅଛି ଶୁଣ । ତୁମ ପୋଷା ବିଲେଇର ନିଶରୁ କିଛି ବାଳ କାଟି ରଖିଥିବ । ସୁଲତାନ ତମକୁ ଭୂତ ଛଡ଼ାଇବାକୁ କହିବା ମାତ୍ରେ ତମେ ସେଗୁଡ଼ିକ ନିଆଁରେ ପକାଇ ସେଇ ଧୂଆଁର ଗନ୍ଧ ତାଙ୍କ ଝିଅକୁ ଶୁଙ୍ଘାଇ ଦେବ । ଭୂତ ସାଙ୍ଗେ ସାଙ୍ଗେ ତାଙ୍କୁ ଛାଡ଼ି ପଳେଇବ ।"

ଅଜିଜ୍‌କୁ ସବୁକଥା ଜଳଦେବୀମାନେ କହି ତାକୁ ଆଣି ବାମ୍ପୀ ବାହାରେ ଛାଡିଦେଲେ ।

ତା'ପରେ ଅଜିଜ୍ ଆସି ଘରେ ପହଞ୍ଚିଲା ଓ ବିଲେଇକୁ ଧରି ତା' ନିଶରୁ କିଛି ବାଳ କାଟି ପାଖରେ ରଖିଲା । ପରଦିନ ସକାଳେ ଜଣେ ଲୋକ ସୁଲତାନ୍ ଆସୁଥିବାର ଖବର ଦେଲା । ଅଳ୍ପ ସମୟ ପରେ ସ୍ୱୟଂ ସୁଲତାନ୍ ଆସି ସେଠାରେ ପହଞ୍ଚିଲେ ଓ ଅଜିଜ୍‌କୁ ଝିଅ

ବିଷୟରେ ସବୁ କହିଲେ । ଅଜିଜ୍ କହିଲା କି ଶାହାଜାଦୀଙ୍କୁ ତା' ପାଖକୁ ନେଇ ଆସିବାକୁ । କିଛି ସମୟ ପରେ କେତେକ ଦାସୀ ତାଙ୍କୁ ସେଠାକୁ ନେଇ ଆସିଲେ ।

ଜଳଦେବୀଙ୍କ କଥା ଅନୁସାରେ ଅଜିଜ୍ ସେହି ବଲେଇ ନିଶ ସବୁକୁ ନିଆଁ ରେ ପକାଇ ଶାହାଜାଦୀଙ୍କ ମୁହଁ ପାଖରେ ଧୂଆଁ ଦେଲା । ଧୂଆଁ ଆଘ୍ରାଣ କରିବା ମାତ୍ରେ ସେ ଢଳେ ପଡିଗଲେ ଓ କିଛି ସମୟ ପରେ ନିଦରୁ ଉଠିଲା ପରି ଉଠି ବସିଲେ । ସେତେବେଳେ ତାଙ୍କ ଚେହେରା ଶାନ୍ତ ଥିଲା ଓ ସେ ନିଜ ପିତାଙ୍କୁ ଚାହିଁ ଅଳ୍ପ ହସିଲେ ।

ସୁଲତାନ୍ ଖୁବ୍ ଖୁସି ହେଲେ ଓ ତାଙ୍କର ପ୍ରଧାନ ଉଜୀରଙ୍କୁ ଆନନ୍ଦରେ ଚାହିଁବାରୁ ଉଜୀର କହିଲେ, "ହଜୁର, ବୋଧହୁଏ ଆପଣ ଗୋଟାଏ କଥା ଭୁଲି ଯାଇଛନ୍ତି । ସାତମାସ ହେବ ଝିଅ ଏପରି ରୋଗ ଭୋଗୁଛି । କେହି ଭଲ ନ କରିପାରିବାରୁ ଆପଣହିଁ କହିଥିଲେ ଯେ ଯିଏ ଝିଅକୁ ଭଲ କରିଦେବ ତାକୁହିଁ ଝିଅକୁ ବାହା ଦେବ ।"

"ହଁ ମୋର ମନେ ପଡୁଛି । ତେବେ ଏ ଫକୀର ସେକଥା ମାନିଲେ ତ ହେଲା ।" ସୁଲତାନ୍ କହିଲେ ।

"ସେକଥା ମୁଁ ବୁଝିବି ।" ଉଜୀର କହିଲେ ।

ଉଜୀର ଅଜିଜ୍ ପାଖକୁ ଯାଇ ସୁଲତାନ୍‌ଙ୍କ ଇଚ୍ଛା ପ୍ରକାଶ କଲେ । ଅଜିଜ୍ ଆନନ୍ଦରେ ତାହା ସ୍ୱୀକାର କଲା । ସୁଲତାନ୍ ବହୁତ ଧୁମଧାମରେ ବାହାଘର କଲେ ।

ଝିଅର ବାହା ଦେବାରେ କିଛିଦିନ ପରେ ବୃଦ୍ଧ ସୁଲତାନ୍‌ଙ୍କର ମୃତ୍ୟୁ ହେଲା । ଶାହାଜାଦୀ ତାଙ୍କର ଏକମାତ୍ର କନ୍ୟା ଥିବାରୁ ଜାମାତା ଅଜିଜ୍‌ହିଁ ରହମଦିଲ୍ ନାମ ନେଇ ନୂତନ ସୁଲତାନ୍ ହୋଇ ଗାଦିରେ ବସିଲେ, ଅକଳନ ସମ୍ପତ୍ତିର ଅଧିକାରୀ ହୋଇ ସୁଦ୍ଧା ସେ ଥିଲେ ନମ୍ର ଓ ସାଧୁ ସ୍ୱଭାବର ।



ପଶୁ-ପକ୍ଷୀ:

# ଆର୍କଟିକ୍ ସିଲ୍ ଜଳଚର

ଆର୍କଟିକ୍ ସମୁଦ୍ର ତଟରେ ଯେତେବେଳେ ସିଲ୍ ଛୁଆମାନେ ଦଳ ଦଳ ହୋଇ ବୁଲୁଥା'ନ୍ତି, ସେତେବେଳେ ସେମାନଙ୍କର କୋମଳ ହରିତ ବର୍ଣ୍ଣର ଦେହରେ ସୂର୍ଯ୍ୟକିରଣ ପଡି ଖୁବ୍ ସୁନ୍ଦର ଦିଶେ । ମୁହଁଟିମାନ ନିରୀହ, ବଡ଼ ବଡ଼ ବାଇଗଣି ରଙ୍ଗର ଆଖି ସବୁ ମିଟିମିଟି କରି ସେମାନେ ଚାହିଁଥାନ୍ତି ।

ମାର୍ଚ୍ଚ ମାସ ଆରମ୍ଭରୁ ଏପ୍ରିଲ୍ ଶେଷ ପର୍ଯ୍ୟନ୍ତ ସେମାନେ ଜନ୍ମ ହୁଅନ୍ତି ଅଯୁତ ଅଯୁତ ସଂଖ୍ୟାରେ । କିନ୍ତୁ ସପ୍ତାହେ ମଧ୍ୟ ବଞ୍ଚିବା ସେମାନଙ୍କ ପାଇଁ କଷ୍ଟ । କାରଣ ଜନ୍ମ ହେବାର ସପ୍ତାହକ ମଧ୍ୟରେ ଦେହର ରଙ୍ଗ ବାଇଗଣି ହୋଇଯାଏ । ରଙ୍ଗ ବଦଳିବା ପୂର୍ବରୁ ହିଁ ଶିକାରୀମାନେ ଚର୍ମ ସଂଗ୍ରହ କରିବା ପାଇଁ ଅସଂଖ୍ୟ ସିଲ୍ ଛୁଆଙ୍କୁ ନିର୍ମମ ଭାବରେ ମାରି ପକାନ୍ତି । ଏହି ସବୁ ଚର୍ମରେ ଧନୀଲୋକମାନେ କୋଟ୍ ପ୍ରସ୍ତୁତ କରନ୍ତି ।

ଲକ୍ଷ ଲକ୍ଷ ମଲେ ମଧ୍ୟ ଲକ୍ଷ ଲକ୍ଷ ଜନ୍ମ ନିଅନ୍ତି । ନିଉଫାଉଣ୍ଡଲାଣ୍ଡରେ "ଗ୍ରୀନ୍‌ପିସ୍" ନାମକ ଏକ ସଂସ୍ଥା ସେମାନଙ୍କୁ ବଞ୍ଚାଇବା ପାଇଁ ପ୍ରୟାସ କରୁଛନ୍ତି । କାରଣ ସେମାନେ କହନ୍ତି ଏହିଭଳି ଭାବରେ ଶୀକାର କଲେ ସେମାନେ ଦଶ ବର୍ଷରେ ସମ୍ପୂର୍ଣ୍ଣ ଲୋପ ପାଇଯିବେ ।

ଆର୍କଟିକ୍ ସିଲ୍ ସ୍ତନ୍ୟପାୟୀ ଜୀବ । ସେମାନଙ୍କ ମଧ୍ୟରେ ଏକ ବିରାଟ ପ୍ରକାରର ସିଲ୍ ଅଛନ୍ତି ତାଙ୍କୁ ହାତୀ ସିଲ୍ କୁହାଯାଏ, ସେମାନଙ୍କ ଓଜନ ହୁଏ ଚାରି ଟନ୍ ଓ ଲମ୍ବା ହୁଏ ଛ ମିଟର୍ ପର୍ଯ୍ୟନ୍ତ ! ସେମାନେ ପାଣିରେ ବୁଡ଼ି, ମାଛ, କଙ୍କଡ଼ା, ଛୋଟ ମାଛ ଓ ସାମୁକା ଯାହା ପାଇଲେ ଖାଇ ନିଅନ୍ତି । ସେମାନଙ୍କ କାନ ଏତେ ଛୋଟ ଯେ ବାହାରକୁ ଦେଖାଯାଏ ନାହିଁ । କିନ୍ତୁ ଶ୍ରବଣ ଶକ୍ତି ଖୁବ୍ ପ୍ରଖର । ଏମାନେ ପାଣିର ଉପରି ଭାଗକୁ ଆସି ବହୁତ ପବନ ନିଶ୍ୱାସରେ ଗ୍ରହଣ କରି ବହୁ ସମୟ ପର୍ଯ୍ୟନ୍ତ ବୁଡ଼ି ରହନ୍ତି । ସେମାନେ ପାଣିରେ ଜଳଚର ଜୀବ ପରି ଅନାୟାସରେ ଚଲାବୁଲା କରନ୍ତି । ସ୍ଥଳ ଭାଗରେ ମଧ୍ୟ ସ୍ଥଳଚର ଜୀବ ପରି ଖୁସିରେ ସେମାନେ ଦଳବାନ୍ଧି ବିଚରଣ କରନ୍ତି ।



# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ନଭେମ୍ବର ୧୯୮୫ ସଂଖ୍ୟାରେ ପ୍ରକାଶ ପାଇବ



M. C Morabad



M. Natarajan

★ ଉଭୟ ଫଟୋ ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ଗୃହ ଧାଡ଼ରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ସେପ୍ଟେମ୍ବର ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ।
★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

## ଜୁଲାଇ ପ୍ରତିଯୋଗିତାର ଫଳ

ପ୍ରଥମ ଫଟୋ : "କାନ ଫାଟିଗଲା, ବଜାନା ଆଉ,"
ଦ୍ୱିତୀୟ ଫଟୋ : ଫାଟିଯିବ ଭାଇ, ସେତକ ଥାଉ !"
ପୁରସ୍କାର ବିଜୟୀ : ଲକ୍ଷ୍ମୀଧର ଦାସ, ବରଙ୍ଗ, ବାଲେଶ୍ୱର
ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ହୁଏନ୍ ସାଂ। ୨. ଗୃଲ୍କ୍ୟ ବଂଶ। ୩. ଆଲାଉଦ୍ଦିନ ଖିଲ୍‌ଜୀ। ୪. ଚଉଦ ବର୍ଷ। ୫. ସାହ୍‌ଜୀ।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.